# କେତୋଟି ଶାରୀରିକ କଥା

## ଛାତ୍ର ଓ ଶିକ୍ଷକଙ୍କ ପାଇଁ



ଶ୍ରୀ ପ୍ରଭାକର ମିଶ୍ର

ପ୍ରକାଶକ :
ଶ୍ରୀମତୀ ରୁକ୍ମିଣୀ ମିଶ୍ର
୧୮୭, ନୂଆପଲ୍ଲୀ
ଭୁବନେଶ୍ୱର-୧୪

ପ୍ରକାଶନ - ୧୯୯୨

ମୁଦ୍ରଣ
ଅନୁପମା ପ୍ରିଣ୍ଟର୍ସ
୭୨୦, ଶହୀଦନଗର
ଭୁବନେଶ୍ୱର-୭

ମୂଲ୍ୟ : ଟ ୮-୦୦

# ଅଭିମତ

ଶହୀଦନଗର ଉଚ୍ଚପ୍ରାଥମିକ ବିଦ୍ୟାଳୟ (କ)ର ପ୍ରଧାନ ଶିକ୍ଷକ ଶ୍ରୀ ପ୍ରଭାକର ମିଶ୍ରଙ୍କ ଲିଖିତ ଛାତ୍ର ଓ ଶିକ୍ଷକଙ୍କ ପାଇଁ "କେତୋଟି ଜାଣିବା କଥା" ଶୀର୍ଷକ ପୁସ୍ତିକା ପଢ଼ିବାକୁ ପାଇ ଆନନ୍ଦିତ ହେଲି । ପ୍ରାଥମିକ ବିଦ୍ୟାଳୟ ପାଇଁ ସେ କେତୋଟି ଗଳ୍ପ ଓ ଜ୍ଞାତବ୍ୟ କଥା ସଂଗ୍ରହ କରିଛନ୍ତି । ଏହା ତାଙ୍କ ଅଧ୍ୟବସାୟର ପରିଚୟ ଦିଏ ଏବଂ ଏହାଦ୍ୱାରା ଉଭୟ ଶିକ୍ଷାର୍ଥୀ ଓ ଶିକ୍ଷକ ଉପକୃତ ହେବେ । ପ୍ରଥମ ଶ୍ରେଣୀରେ ପଠନ ଶିକ୍ଷା ଦେବା ପାଇଁ ବିଭିନ୍ନ ଦିଗରୁ ସେ ଆଲୋଚନା କରିଛନ୍ତି । ପ୍ରାଥମିକ ବିଦ୍ୟାଳୟରେ ଗଣିତ ଶିକ୍ଷାର ଲକ୍ଷ୍ୟ ସମ୍ବନ୍ଧରେ ସେ ଆଲୋକପାତ କରିଛନ୍ତି । ଏହି ଦୁଇଟି ଆଲୋଚନା ତାଙ୍କ ଅଭିଜ୍ଞତାର ପରିଚୟ ଦିଏ । ଏହା ଶିକ୍ଷକମାନଙ୍କ ପାଇଁ ପ୍ରୟୋଜନୀୟ । ଶ୍ରୀ ମିଶ୍ରଙ୍କ ଏହି ଉଦ୍ୟମର ପ୍ରଶଂସା କରୁଛି । ଲେଖକଙ୍କ ଶ୍ରମ ସାର୍ଥକ ହେବ, ଯଦି ଶିକ୍ଷକ ଓ ଶିକ୍ଷାର୍ଥୀ ଏହାର ସମୁଚିତ ବ୍ୟବହାର କରନ୍ତି ।

**ଶ୍ରୀ ଶତ୍ରୁଘ୍ନ ନାଥ**
ଗୁରୁଦିବସ, ୧୯୯୧
୬୮୯, ଶହୀଦନଗର
ଭୁବନେଶ୍ୱର-୭

# ଅଭିମତ

ଶହୀଦନଗର ଉଚ୍ଚପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ପ୍ରଭାକର ମିଶ୍ରଙ୍କ ଦ୍ୱାରା ରଚିତ "କେତୋଟି ଜାଣିବା କଥା" ପୁସ୍ତିକାର ପ୍ରଥମ ତିନିଗୋଟି ପ୍ରବନ୍ଧ ମୁଖ୍ୟତଃ ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ । ପ୍ରାଥମିକ ସ୍ତରରେ ଛାତ୍ର ଛାତ୍ରୀମାନେ କିପରି ପଠନ ଶିକ୍ଷା ଓ ଚାଉ ଅଭ୍ୟାସ କରିବେ, ସେମାନଙ୍କୁ କିପରି ଭାବେ ଗଣିତ ଶିକ୍ଷା ଦିଆଯିବ ଏବଂ ସେମାନଙ୍କୁ ଗଳ୍ପ କହିବାର ଉଦ୍ଦେଶ୍ୟ ଓ ପ୍ରଣାଳୀ କଅଣ ହେବା ଆବଶ୍ୟକ ତାହା ଏହି ତିନୋଟି ପ୍ରବନ୍ଧରେ ସୂଚିତ ହୋଇଛି । ଏହି ସୂଚନା ଗୁଡ଼ିକ ଯଥାର୍ଥ ଓ ଶିକ୍ଷଣୀୟ । ଏହି ପୁସ୍ତିକାରେ ତିନୋଟି ଶିଶୁ ମନୋରଞ୍ଜନ ଗଳ୍ପ ସ୍ଥାନ ପାଇଛି । ଶିଶୁର ନୈତିକତା ବୃଦ୍ଧିରେ ଗଳ୍ପଗୁଡ଼ିକ ସହାୟକ ହେବ— ସାଧାରଣ ଜ୍ଞାନ ବୃଦ୍ଧି ପାଇଁ "ଜାଣିବା କଥା"ରେ ପ୍ରାଥମିକ ଶିକ୍ଷା ଉପଯୋଗୀ ଅନେକଗୁଡ଼ିଏ ବିଷୟର ଅବତାରଣା କରାଯାଇଅଛି । ମୋର ବିଶ୍ୱାସ ଏହି ପୁସ୍ତିକାଟି ନିଶ୍ଚିତ ଭାବେ ପ୍ରାଥମିକ ଶିକ୍ଷା ସ୍ତର ପାଇଁ ଉପଯୋଗୀ ।

**ପ୍ରାଣବନ୍ଧୁ କର**
୩୯୬-ଶହୀଦନଗର
ଭୁବନେଶ୍ୱର-୭

ଭୁବନେଶ୍ୱର
ତା ୧୯।୯।୯୧

# ଅଭିମତ

ଶିକ୍ଷକବନ୍ଧୁ ଶ୍ରୀ ପ୍ରଭାକର ମିଶ୍ର ସାଙ୍ଗଠନିକ କାର୍ଯ୍ୟରେ ବ୍ୟୁତ୍ପତ୍ତି ଲାଭ କରିବା ସଙ୍ଗେ ସଙ୍ଗେ ପ୍ରବନ୍ଧ ଓ ଗଳ୍ପ ଲେଖାରେ ମନୋନିବେଶ କରିଥିବା ଆନନ୍ଦର କଥା । ଏହି ପୁସ୍ତକଟି ତାଁର ଏକ ନିଦର୍ଶନ । ପୂର୍ବରୁ ରାଜ୍ୟ ଶିକ୍ଷା ଗବେଷଣା ଓ ପ୍ରଶିକ୍ଷଣ ପରିଷଦର "ଶିକ୍ଷାଲୋକ"ରେ ଶ୍ରୀ ମିଶ୍ରଙ୍କର ଆଉ କେତେକ ପ୍ରବନ୍ଧ ମଧ୍ୟ ପ୍ରକାଶିତ ହୋଇଛି ।

ଏହି ପୁସ୍ତକଟିରେ କେତୋଟି ଶିକ୍ଷଣୀୟ ପ୍ରବନ୍ଧ, ମନ ମତାଣିଆ ଗଳ୍ପ ଓ କେତେକ ଜ୍ଞାତବ୍ୟ ବିଷୟ ସ୍ଥାନ ପାଇଛି । ଲେଖା ଗୁଡ଼ିକ ସରଳ ଓ ସୁଖପାଠ୍ୟ ।

ସାହିତ୍ୟ ଓ ଗଣିତ ସମ୍ବନ୍ଧୀୟ ପ୍ରବନ୍ଧଗୁଡ଼ିକ ତାଙ୍କର ନିରବଚ୍ଛିନ୍ନ ଶିକ୍ଷକ ଜୀବନର ଅଭିଜ୍ଞତାର ନିଦର୍ଶନ । ପ୍ରଥମ ଶ୍ରେଣୀରେ "ପଠନ" ଶିକ୍ଷାର ବିଭିନ୍ନ ପ୍ରଣାଳୀ ବେଶ୍ ଚିତ୍ତାକର୍ଷକ । ନୀରସ ଗଣିତ ଶିକ୍ଷାକୁ ସରସ, ସରଳ ଓ ସୁଖକର କରିବାର ଉପାୟ ପୁସ୍ତକରେ ପ୍ରଦତ୍ତ ହୋଇଛି । ସେହିପରି ଗଳ୍ପଗୁଡ଼ିକ ବେଶ୍ ଶିକ୍ଷଣୀୟ । ଗଳ୍ପ ମାଧ୍ୟମରେ ଶିଶୁମାନଙ୍କ ହୃଦୟରେ ଜାତୀୟ ଭାବ, ସ୍ୱଦେଶ ପ୍ରୀତି, ନିଃସ୍ୱାର୍ଥପରତା ତଥା ବିପନ୍ନଙ୍କ ପାଇଁ ଦୟାଭାବ ପୋଷଣ ପାଇଁ ଲେଖକ ଗଳ୍ପ ମାଧ୍ୟମରେ ଉଦ୍ୟମ କରିଛନ୍ତି ।

ସର୍ବୋପରି କୁହାଯାଇ ପାରେ ଯେ ପୁସ୍ତକଟି ପାଠକର ଜ୍ଞାନ ବର୍ଦ୍ଧନରେ ସାହାଯ୍ୟ କରିବ ।

ଶ୍ରୀ ମିଶ୍ରଙ୍କର ଲେଖନୀ ସର୍ବଦା କର୍ମଚଞ୍ଚଳ ରହୁ ଏତିକି କାମନା ।

**ଚିନ୍ତାମଣି ଆଚାର୍ଯ୍ୟ, O.E.S. (Rtd)**
ଅବସରପ୍ରାପ୍ତ ପ୍ରଧାନ ଶିକ୍ଷକ
୩୪୬, ଶହୀଦନଗର
ଭୁବନେଶ୍ୱର
ତା ୧୬।୮।୧୯୯୧

# ଉତ୍ସର୍ଗ

ଯେଉଁମାନଙ୍କର ଲହୁ ଲୁହକୁ ନେଇ
ମୋ ଜୀବନର ଏଇ ପାହାଚ ପର୍ଯ୍ୟନ୍ତ
ଉତ୍ତୀର୍ଣ୍ଣ କରିପାରିଛି, ସେହି ପରମ ପୂଜ୍ୟପାଦ ପିତୃଦେବ
৺ ଜଗନ୍ନାଥ ମିଶ୍ରଙ୍କର କରକମଳରେ ତୋଳି ଦେଉଛି ମୋର ଏଇ
ପ୍ରକାଶିତ 'କେତୋଟି ଜାଣିବା କଥା' (ଶିକ୍ଷକ ଓ ଛାତ୍ରଙ୍କ ପାଇଁ)ପୁସ୍ତକଟିକୁ ।

ପ୍ରଭାକର

# ଲେଖକଙ୍କ କଲମରୁ

ସାଧାରଣତଃ ଶ୍ରେଷ୍ଠ ପିଲମାନଙ୍କର ଶିକ୍ଷା ବିଶେଷ ଭାବରେ ନିର୍ଭର କରେ ପରିବାର ତଥା ପ୍ରାଥମିକ ବିଦ୍ୟାଳୟରେ । ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ଓ ଶିକ୍ଷୟିତ୍ରୀମାନେ ଜ୍ଞାନ ଓ ଦକ୍ଷତା ବୃଦ୍ଧିରେ ବିଶେଷ ସହାୟତା କରିଥାନ୍ତି । କୋମଳମତି ଶିଶୁମାନଙ୍କ ପାଇଁ ପ୍ରାଥମିକ ସ୍ତରର ଶିକ୍ଷା କି ପ୍ରକାର କୌଶଳ ବା ପଦ୍ଧତି ଅବଲମ୍ବନ କରିପାରିବ ତାହା ଶିକ୍ଷକ ଶିକ୍ଷୟିତ୍ରୀ ଚିନ୍ତା କରିବା କଥା । ସ୍କିମ୍ ତଥା ସିଲାବସକୁ ଆଖି ଆଗରେ ରଖି ବିଭିନ୍ନ ଅଞ୍ଚଳର ଜୀବନଯାତ୍ରା ମାନସିକ ଅବସ୍ଥା ପ୍ରତି ଶିକ୍ଷକ ସଜାଗ ରହି ଶିକ୍ଷାଦାନ ଦେଲେ ବର୍ତ୍ତମାନର ନିରକ୍ଷରତା ନିଶ୍ଚିତ କିଛି ମାତ୍ରାରେ ଦୂର ହୋଇ ପାରିବ ବୋଲି ମୋର ବିଶ୍ୱାସ ।

ମୋର ଚାକିରୀ ଜୀବନ ୧୯୬୨ ମସିହାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଦୀର୍ଘ ୨୯ ବର୍ଷ ଧରି ଏହି ପ୍ରାଥମିକ ଶିକ୍ଷକ ଭାବରେ କାର୍ଯ୍ୟ କରୁଅଛି । ମୁଁ ସର୍ବଦା ଏହି ପ୍ରାଥମିକ ସ୍ତରର ପିଲମାନେ ସଶ୍ରଦ୍ଧା ମନଯୋଗ ଦେଇ କିପରି ପାଠ ପଢ଼ିବେ ଓ ପାଠ ପ୍ରତି ଆଗ୍ରହ ଆଣିବେ, ସେଥିନେଇ ଚିନ୍ତିତ । ସମୟ ମିଳିଲେ, ମୁଁ ବିଭିନ୍ନ ପ୍ରବନ୍ଧ ଲେଖି ଶିକ୍ଷାଲୋକ ମାଧ୍ୟମରେ ପ୍ରକାଶିତ କରିବାକୁ ଦେଇଥାଏ । ସେଥିମଧ୍ୟରୁ ୧୯୮୧ରେ (ଶିକ୍ଷକଙ୍କ ଜୀବନ ଓ ଆଚରଣ) ୧୯୮୨ରେ (ଶିକ୍ଷାଦାନ ସମ୍ବନ୍ଧୀୟ କୌଶଳ) ଓ ୧୯୮୭ରେ (ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକ ଓ ପିତା ମାତାଙ୍କ ଭୂମିକା ବିଷୟରେ ପ୍ରକାଶ ପାଇଛି । ତଥାପି ୧୯୯୦ ମସିହାରେ ଚିନ୍ତାକରି ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷାଦାନ ସରସ ସୁନ୍ଦର କରିବା ପାଇଁ ପ୍ରଥମ ଶ୍ରେଣୀରେ ପଠନ ପ୍ରାଥମିକ ବିଦ୍ୟାଳୟରେ ଗଣିତ ଶିକ୍ଷାର ପ୍ରୟୋଜନ ଏବଂ ଗଳ୍ପ କହିବାର ଉଦ୍ଦେଶ୍ୟ ବିଷୟକୁ ନେଇ ଏକ ଶ୍ରେଷ୍ଠ ପୁସ୍ତକ ରଚନା କରିବ । ସେହି ପୁସ୍ତକରେ ଶିଶୁମାନଙ୍କ ପାଇଁ କେତେକ ଶିକ୍ଷଣୀୟ ଗଳ୍ପ ଓ ଅନ୍ୟ ଶ୍ରେଣୀର ପିଲଙ୍କ ପାଇଁ କେତେକ ଜାଣିବା କଥା ପ୍ରକାଶ କଲି । ଶିକ୍ଷକ ଶିକ୍ଷୟିତ୍ରୀ ତଥା ପିଲମାନେ ପୁସ୍ତକଟିକୁ ଆଦରର ସହ ପାଠ କରିବେ ବୋଲି ମୋର ଆଶା ଓ ବିଶ୍ୱାସ ।

**ଶ୍ରୀ ପ୍ରଭାକର ମିଶ୍ର**

# ସୂଚୀପତ୍ର



—○—

# ପ୍ରଥମ ଶ୍ରେଣୀରେ ପଠନର ଆବଶ୍ୟକତା ଓ ପ୍ରଣାଳୀ ?

## ୧) ପଠନର ଆବଶ୍ୟକତା :-

ପ୍ରକୃତ କାର୍ଯ୍ୟକ୍ଷେତ୍ରରେ ଆବଶ୍ୟକତା ଦୃଷ୍ଟିରେ ପଠନ ବିଦ୍ୟାଳୟରେ ପାଠ୍ୟ ତାଲିକାରେ ଗୋଟିଏ ବିଶିଷ୍ଟ ସ୍ଥାନ ଅଧିକାର କରେ । ଆମ୍ଭମାନଙ୍କର ଜ୍ଞାନ ଆଂଶିକ ଭାବରେ ଆମ୍ଭମାନଙ୍କର ଚତୁର୍ଦ୍ଦିଗସ୍ଥ ବିଷୟର ପର୍ଯ୍ୟବେକ୍ଷଣ ଓ ବହୁଦର୍ଶନ ଦ୍ୱାରା ଏବଂ କେତେକ ପରିମାଣରେ ଆମ୍ଭମାନଙ୍କର ପର୍ଯ୍ୟବେକ୍ଷଣ ବହୁଦର୍ଶନର ବହିର୍ଭୂତ ବିଷୟମାନ ଶ୍ରବଣ ଦ୍ୱାରା ବିକଶିତ ହୋଇଥାଏ । କିନ୍ତୁ ଏହିଗୁଡ଼ିକ ଆମ୍ଭମାନଙ୍କର ଜ୍ଞାନଲାଭର ଏକମାତ୍ର ଉପାୟ ହେଲେ ଯେଉଁ ବାଳକ ଦରିଦ୍ର ପରିବାରରେ ପ୍ରତିପାଳିତ, ତାହାର ସଂସାର ଜ୍ଞାନ ସୀମାବଦ୍ଧ ହେବା ସ୍ୱାଭାବିକ୍ ବୋଲି ସେ ଅତି ଅଳ୍ପ ମାତ୍ର ଜ୍ଞାନ ଲାଭ କରିବ । ପଠନ ଦ୍ୱାରା ମନୁଷ୍ୟ ସମସ୍ତ ପୃଥିବୀର ଜ୍ଞାନ ଭଣ୍ଡାରରେ ପ୍ରବେଶ ଲାଭ କରିବାକୁ କ୍ଷମ ହୁଏ । ବାଳକ ପଡ଼ି ଶିଖିଲାକ୍ଷଣି ତାହାର ଶକ୍ତି ଏବଂ ଅଭିରୁଚି ଅନୁଯାୟୀ ଯେତେ ଇଚ୍ଛା ସେତେ ଜ୍ଞାନ ଲାଭ କରିପାରେ । ଏଥିପାଇଁ ପଠନକୁ ସର୍ବବିଧ ଜ୍ଞାନ ଲାଭର ପଥ-ପ୍ରଦର୍ଶକ ବୋଲାଯାଏ । ସାଧାରଣ କାର୍ଯ୍ୟକ୍ଷେତ୍ରରେ ଯେ ଯେଉଁ ବୃତ୍ତି ଅବଲମ୍ବନ କରୁ ପଛକେ, ପଠନ ସର୍ବଦା ତାହାର ବିଶେଷ ଭାବରେ କାର୍ଯ୍ୟକାରୀ ହେବ । ସମାଜରେ ପଠନ ଶକ୍ତି ଗୋଟିଏ ଗୁଣ ବୋଲି ଆଉ ବିବେଚିତ ହେଉନାହିଁ; ପଠନ ବର୍ତ୍ତମାନ କାଳରେ ଏକାନ୍ତ ଆବଶ୍ୟକ । ପକ୍ଷାନ୍ତରେ ପଠନରେ ଅସାମର୍ଥ୍ୟ ନିନ୍ଦନୀୟ ବିବେଚିତ ହୋଇଥାଏ । କି ବ୍ୟବସାୟୀ ବ୍ୟକ୍ତି, କି ଅତି ଦରିଦ୍ର ଶିଶୁ, ସମସ୍ତଙ୍କର କାର୍ଯ୍ୟ ସିଦ୍ଧି ପାଇଁ ପଠନ ଏକାନ୍ତ ଆବଶ୍ୟକ । ଜ୍ଞାନ ବିଜ୍ଞାନର ଅଭୂତପୂର୍ବ ପ୍ରଗତି ସାଧିତ ହେଉଛି । ଏପରି ସ୍ଥଳରେ ଜ୍ଞାନର ବିସ୍ଫୋରଣ ଘଟିବା ସ୍ୱାଭାବିକ୍ । ସେହିଦୃଷ୍ଟିରୁ ପଠନର ଆବଶ୍ୟକତା ମଧ୍ୟ ବିଶେଷ ଭାବରେ ଅନୁଭୂତ ହୁଏ ।

## ୨) ପଠନ ଶିକ୍ଷାଦାନର ଲକ୍ଷ୍ୟ :-

"ବାଳକ ବାଳିକାମାନେ କଥାବାର୍ତ୍ତାରୁ ଯେପରି ଅନ୍ୟର ମନୋଗତଭାବ ବୁଝିବାକୁ ଶିକ୍ଷା କରନ୍ତି ସେହିପରି ସେମାନଙ୍କୁ ଅନ୍ୟର ଲିପିବଦ୍ଧ ଭାବମାନ ବୁଝିବାକୁ କ୍ଷମ କରାଇବା ପଠନ ଶିକ୍ଷାଦାନର ଲକ୍ଷ୍ୟ।" ଶିକ୍ଷକ ପଠନ ଶିକ୍ଷା ଦେବା ସମୟରେ ଏହି ଉଦ୍ଦେଶ୍ୟ ପ୍ରତି ସର୍ବଦା ଦୃଷ୍ଟି ରଖିବେ। ଉଚ୍ଚାରଣ, ବାକ୍ୟ କଥନ ପ୍ରଣାଳୀ, ବ୍ୟାକରଣ ଓ ମୌଖିକ ରଚନା ପଠନ ଶିକ୍ଷାଦାନ ପକ୍ଷରେ ଅତ୍ୟନ୍ତ ଆବଶ୍ୟକ, ମାତ୍ର ମୁଖ୍ୟ ଉଦ୍ଦେଶ୍ୟ ଦୃଷ୍ଟିରେ ଏଗୁଡ଼ିକ ଗୌଣ ବିବେଚିତ ହେବା ଉଚିତ୍। ବାଳକମାନଙ୍କ ମନରେ ପଠନ ପ୍ରତି ଆଗ୍ରହ ଏବଂ ସାହିତ୍ୟ ବିଷୟରେ ଅନୁଭୂତି ଜନ୍ମାଇବା ପଠନ ଶିକ୍ଷାଦାନର ଅନ୍ୟ ଗୋଟିଏ ଉଦ୍ଦେଶ୍ୟ ଅଟେ। କିନ୍ତୁ ନିମ୍ନପ୍ରାଥମିକ ବିଦ୍ୟାଳୟରେ ଏହି ଉଦ୍ଦେଶ୍ୟ ପ୍ରାୟ ସାଧିତ ହୋଇପାରେ ନାହିଁ।

## ୩) ପଠନର ପ୍ରଥମ ଅବସ୍ଥା :-

ଶିଶୁ ଶବ୍ଦର ଦୃଷ୍ଟି ଚିହ୍ନ ସଙ୍ଗରେ ଶବ୍ଦର ଧ୍ୱନିକୁ ମିଳାଇବାକୁ ଶିକ୍ଷା କରେ। ଏହା ଯାନ୍ତ୍ରିକ ପଠନ କାର୍ଯ୍ୟ ମାତ୍ର; କିନ୍ତୁ ପ୍ରକୃତରେ ପଠନ ନୁହେଁ।

ସୁପଠନ ନିମ୍ନଲିଖିତ ବିଷୟମାନ ସୂଚନା କରେ। (୧) ଲେଖକଙ୍କର ଅଭିପ୍ରେତଭାବ ବିଶଦ ରୂପେ ସମ୍ପୂର୍ଣ୍ଣମାତ୍ରାରେ ହୃଦୟଙ୍ଗମ କରିବା (୨) ସେହି ଭାବଗୁଡ଼ିକ ବାକ୍ୟରେ ପ୍ରକାଶ କରି ଶ୍ରୋତାମାନଙ୍କର ବୋଧଗମ୍ୟ କରାଇବାକୁ କ୍ଷମ ହେବା (୩) ଲେଖକ ଯେଉଁ ଭାବଦ୍ୱାରା ପ୍ରଣୋଦିତ ହୋଇ ସେହି ରଚନା ଲେଖିଥିଲେ, ସେହି ଭାବଗୁଡ଼ିକ ଶ୍ରୋତା ମନରେ ଜାଗ୍ରତ କରାଇବାକୁ କ୍ଷମ ହେବା। ଶିଶୁ ସର୍ବପ୍ରଥମେ ବିଦ୍ୟାଳୟରେ ପ୍ରବେଶ ହେଲାକ୍ଷଣି ଏହି ବିଷୟମାନ ଅନୁଭବ କରିପାରେ ନାହିଁ। କିନ୍ତୁ ସେ ତାହାର ଶିକ୍ଷାର ବିଭିନ୍ନ ଶ୍ରେଣୀରେ ଯେପରି କ୍ରମେ କ୍ରମେ ସେହି ବିଷୟଗୁଡ଼ିକ ଶିଖି ପାରିବ ତାହାକୁ ଉପର ଲିଖିତ କ୍ରମରେ ସେହିପରି ଶିକ୍ଷା ଦେବା ଆବଶ୍ୟକ। ଲେଖ୍ୟମାନଙ୍କ ଦ୍ୱାରା ଶିଶୁ ଅଭିଜ୍ଞତା ଅର୍ଜନ କରେ। ସେଥିପାଇଁ

ମହାତ୍ମାଗାନ୍ଧୀ, ଅରବିନ୍ଦ, ରୁଷୋ, ମଣ୍ଟେସରି ପ୍ରଭୃତି ମନୀଷିଗଣ ଇନ୍ଦ୍ରିୟାନୁଭୂତି ଶିକ୍ଷା ଉପରେ ଗୁରୁତ୍ୱ ଦେଇଛନ୍ତି । ଇନ୍ଦ୍ରିୟଲବ୍ଧ ଜ୍ଞାନ ହିଁ ଶିଶୁର ପ୍ରକୃତ ଜ୍ଞାନ ।

## ପ୍ରଥମ ଶ୍ରେଣୀ :-

ପ୍ରଥମ ଶ୍ରେଣୀରେ ଶିକ୍ଷକଙ୍କୁ ପଠନ ଶିକ୍ଷାଦାନରେ ଅନେକ ଅସୁବିଧାମାନ ଦୂରୀଭୂତ କରିବାକୁ ହେବ। ଶିଶୁ ପ୍ରଥମେ ବିଦ୍ୟାଳୟରେ ପ୍ରବେଶ କଲେ ଦେଖାଯାଏ ଯେ ସେ କେତେଗୁଡ଼ିଏ ଶବ୍ଦ ଶୁଣି ଶୁଣି ଶିକ୍ଷା କରି ଆସିଅଛି । ଅକ୍ଷର ଓ ଶବ୍ଦ ଗୁଡ଼ିକ ଧ୍ୱନିର ଚିହ୍ନମାତ୍ର । ଏହି ଶ୍ରେଣୀରେ ଶିକ୍ଷକଙ୍କୁ (୧) ଏହି ଅକ୍ଷର ଓ ଶବ୍ଦଗୁଡ଼ିକ ଦେଖି ଦେଖି କପରି ଚିହ୍ନିବାକୁ ହେବ ତାହା ତାକୁ ଶିଖାଇବାକୁ ହେବ। (୨) ଆଉ ଶବ୍ଦର ନିର୍ଦ୍ଦିଷ୍ଟ ଚିହ୍ନ ଓ ଧ୍ୱନି ସଙ୍ଗରେ ଶବ୍ଦର ଅନ୍ତର୍ଗତ ଭାବକୁ ସମାବେଶ କରିବା ପାଇଁ ତାକୁ କ୍ଷମ କରାଇବାକୁ ହେବ । ଗୋଟିଏ ବାଳକ "ଗୋରୁ" ଏହି ଶବ୍ଦର ଧ୍ୱନିରେ ଅଭ୍ୟସ୍ତ ହୋଇପାରେ ଏବଂ "ଗୋରୁ" ଏହି ଶବ୍ଦ ଲେଖିବାକୁ ଚେଷ୍ଟା କରିପାରେ, କିନ୍ତୁ ଶିଶୁର ମନରେ ଶବ୍ଦର ଧ୍ୱନି ଏବଂ ଚିହ୍ନ ଏକତ୍ର ହୋଇ ବାସ୍ତବରେ ଗୋରୁ କଅଣ ଏହି ଭାବ ନ ଜନ୍ମାଇବା ପର୍ଯ୍ୟନ୍ତ ପଠନ ଶିକ୍ଷାଦାନର ଉଦ୍ଦେଶ୍ୟ ସିଦ୍ଧ ହୁଏ ନାହିଁ । ଗୋଟିଏ ବାଳକ ବିଦ୍ୟାଳୟରେ ନୂତନ ପ୍ରବେଶ କଲେ ତାହାକୁ ବର୍ଣ୍ଣମାଳା ଶିକ୍ଷା ଦେବା ଶିକ୍ଷକଙ୍କ ପକ୍ଷରେ କଠିନ ବିଷୟ । ଓଡ଼ିଆ, ହିନ୍ଦି, ବଙ୍ଗଳା ଏବଂ ସାଧାରଣତଃ ଉର୍ଦ୍ଦୁରେ ମଧ୍ୟ ପ୍ରତ୍ୟେକ ଧ୍ୱନି ପାଇଁ ଗୋଟିଏ ଲେଖାଏଁ ନିର୍ଦ୍ଦିଷ୍ଟ ସାଙ୍କେତିକ ଚିହ୍ନ ଅଛି । ଏଥି ସକାଶେ ଓଡ଼ିଆ, ହିନ୍ଦି, ଉର୍ଦ୍ଦୁ କିମ୍ବା ବଙ୍ଗଳା ବର୍ଣ୍ଣମାଳା ଧ୍ୱନି ଅନୁସାରେ ଗଠିତ ହୋଇଅଛି । ଏହି ସମସ୍ତ କାରଣରୁ ବର୍ଣ୍ଣମାଳା ଶିକ୍ଷାଦାନରୁ ପଠନ ଶିକ୍ଷାଦାନ ଆରମ୍ଭ କରିବା ଆବଶ୍ୟକ ।

ଉପରେ ଲିଖିତ ବିଷୟରୁ ଏହା ପ୍ରତିପନ୍ନ ହେବ ନାହିଁ ଯେ ଅକ୍ଷରଜ୍ଞାନ ଚିନ୍ତାର ପରିମାପକ ଶବ୍ଦ ନୁହେଁ । ପଠନ ଶିକ୍ଷା ଦେବା ପୂର୍ବରୁ କଥୋପକଥନ ପାଠରୁ ଛାତ୍ର ଯେଉଁ ଶବ୍ଦଗୁଡ଼ିକ ଶିଖିଅଛି

ତାହାହିଁ ତାକୁ ଶିକ୍ଷା ଦେବା ଉଚିତ୍ । ଏହାପରେ କଥୋପକଥନରୁ ଶିଖିଥିବା ଶବ୍ଦକୁ ଲେଖି ଚିହ୍ନିବା ପାଇଁ ଛାତ୍ରକୁ ଶିକ୍ଷା ଦେବା କର୍ତ୍ତବ୍ୟ । କେବଳ ଏହି ଉଦ୍ଦେଶ୍ୟରେ ବର୍ଣ୍ଣମାଳା ଶିକ୍ଷା ଦିଆଯାଏ । ଯେଉଁ ଭାଷାରେ ପ୍ରତ୍ୟେକ ଶବ୍ଦର ପ୍ରକାଶ ପାଇଁ ନିର୍ଦ୍ଦିଷ୍ଟ ଛବି ନାହିଁ, ( ଚୀନ୍ ଦେଶ ଭାଷାରେ ଯେପରି ଦେଖାଯାଏ), ଶବ୍ଦଗୁଡ଼ିକ କେବଳ ନିର୍ଦ୍ଦିଷ୍ଟ ସଂଖ୍ୟକ ଚିହ୍ନର ମିଳନ ଦ୍ୱାରା ଗଠିତ । ସେହି ଭାଷାର ଶବ୍ଦଗୁଡ଼ିକ ଆୟତ୍ତାଧୀନ କରିବାକୁ ହେଲେ, ସେଗୁଡ଼ିକୁ ଗୋଟିଏ ଗୋଟିଏ ଆବୃତ୍ତି କଲେ ଚଳିବ ନାହିଁ, କାରଣ ଶବ୍ଦ ଅସଂଖ୍ୟ । ଶବ୍ଦ-ଗଠନ ପ୍ରଣାଳୀ ଆୟତ୍ତାଧୀନ କରିବା ହିଁ ପ୍ରକୃଷ୍ଟ ପନ୍ଥା । ଶବ୍ଦ ଗଠନ ଶିକ୍ଷାର, ଅର୍ଥାତ୍ ବନାନ ଶିକ୍ଷାର ଆବଶ୍ୟକତା ପଠନର ପ୍ରତିବନ୍ଧକ ହେବନାହିଁ ଅଥବା ବାକ୍ପଟୁତାରେ ବାଧା ଦେବନାହିଁ । ଶବ୍ଦ ଗଠନ ପ୍ରଣାଳୀ ଶିକ୍ଷା କରାଗଲେ ଏବଂ ପରିଶେଷରେ ଶବ୍ଦଟି ବନାନ ପ୍ରଣାଳୀ ଅବଲମ୍ବନ ନକରି ଦେଖିବା ମାତ୍ରେ ଚିହ୍ନି ହେବ ଏବଂ ପଠନ କାର୍ଯ୍ୟ ଏତେ ସହଜ ଓ ସ୍ୱତଃ ପରିଚାଳିତ ହେବଯେ, ଶବ୍ଦ ପରିଚୟ ଶ୍ରମସାଧ୍ୟ ବନାନ ଶିକ୍ଷାର ପରିଣାମ ଫଳ ବୋଲି ପ୍ରତୀୟମାନ ନହୋଇ ସ୍ୱାଭାବିକ ପ୍ରକୃତିଗତ ଓ କ୍ଷଣମାତ୍ରେ ସମ୍ପାଦିତ ପରିବୋଧ ହେବ । ଶିଶୁ ବୟଃପ୍ରାପ୍ତ ଲୋକଙ୍କ ଚାଲିବା ଦେଖିବା ଦ୍ୱାରାହିଁ ଚାଲିବାକୁ ଶିଖେ, ଏଥିରେ କାହାର ପ୍ରତିବାଦ ନାହିଁ । ସେ ବୟଃପ୍ରାପ୍ତ ବ୍ୟକ୍ତିର ଦୁଇପାଦର ଚାଳନାକୁ ଯତ୍ନ ସହିତ ନିରୀକ୍ଷଣ କରି ତାହାର ଅନିର୍ଦ୍ଦିଷ୍ଟ ଗତିରୁ ଗୋଟିଏ ପାଦ ଉଠିଲେ ଅନ୍ୟଟି କିପରି ସ୍ୱତଃ ଓ ସମାନ ବ୍ୟବଧାନରେ ଉଠିଯାଉଅଛି ତାହା ବୁଝିନିଏ । ତତ୍ପରେ ସେ ସେହିପରି ଗୋଟିଏ ପାଦ ଉଠାଇଲେ ଅନ୍ୟପାଦଟି ଉଠାଇବାକୁ ଅଭ୍ୟାସ କରେ । ପରିଶେଷରେ ସମୟ ଓ ଦୂରତା ଦ୍ୱାରା ନିଜର ଗତି ଠିକ୍ କରିନିଏ । ଏହି ପ୍ରକାରରେ ଚାଲିବାକୁ ଶିକ୍ଷା କଲେ ସ୍ୱତଃପ୍ରବୃତ୍ତ ହୋଇ ଏପରିକି ଅଜ୍ଞାତ ଭାବରେ ମଧ୍ୟ ବିଭିନ୍ନ ପ୍ରକାରରେ ପଦ ବିକ୍ଷେପ କରି ଚାଲିପାରେ ଏବଂ ସମ୍ପୂର୍ଣ୍ଣ ସ୍ୱାଧୀନ ଭାବରେ ଅକ୍ଲେଶରେ ଓ କମନୀୟଭାବରେ ଚାଲେ । ସାଧିତ କାର୍ଯ୍ୟକୁ ଦେଖି କେଉଁ କେଉଁ ଉପାୟରେ କାର୍ଯ୍ୟହାସଲ

କରାଯାଇଅଛି, ବିବେଚନା କରିବା ଭୁଲ୍ । ପଢିବା ସମୟରେ ପ୍ରତ୍ୟେକ ଅକ୍ଷର ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ନଥାଏ । ଅତଏବ ପଠନରେ ଶବ୍ଦ ସହିତ ସମ୍ପର୍କ ଥାଏ, ଅକ୍ଷର ଗୁଡ଼ିକ ସହିତ ନଥାଏ । ଅର୍ଥାତ୍ ଶବ୍ଦଗୁଡ଼ିକ ଶିଖିବାକୁ ହେବ କିନ୍ତୁ ଅକ୍ଷର ଗୁଡ଼ିକଦ୍ୱାରା ଶବ୍ଦ ଗଠିତ ହୋଇଅଛି, ଏହା ଶିଖିବାକୁ ହେବ ନାହିଁ । ସଂକ୍ଷେପରେ କହିବାକୁ ଗଲେ ଏହା ଭ୍ରାନ୍ତ ଧାରଣା ଅଟେ । ତାହେଲେ କେହି କହିପାରେ ଯେ ପାଦଦୁଇଟି ସମାନ ବ୍ୟବଧାନରେ ପଡୁଅଛି ଏବଂ ସମସ୍ତ ଓ ଦୂରତା ସହିତ ଏହି ପଦ ବିକ୍ଷେପର ମେଳ ଅଛି । ଏହା ଚାଲିବା ସମୟରେ ଆମ୍ଭେମାନେ ଆଦୌ ଜାଣିପାରୁ ନାହିଁ, ଅତଏବ ଆମ୍ଭେମାନେ ଏହି ବିଷୟଗୁଡ଼ିକ ନଜାଣି ଚାଲିବାକୁ ଶିଖିଅଛୁ ଏବଂ ଯଦି ଆମ୍ଭେମାନେ ପଦଚାଳନାକୁ ମନୋନିବେଶ ସହିତ ଦେଖି ଚାଲିବାକୁ ଶିଖୁଁ ତାହେଲେ କେହି ଭଲ ଚାଲି ପାରିବେ ନାହିଁ ଏବଂ ପ୍ରତ୍ୟେକଥର ପଦ ବିକ୍ଷେପର ବ୍ୟତିକ୍ରମ ଘଟିବ ।

ଓଡ଼ିଆ, ହିନ୍ଦି, ବଙ୍ଗଳା ଏବଂ ଉର୍ଦ୍ଦୁ ବର୍ଣ୍ଣମାଳା ଏପରି ବୈଜ୍ଞାନିକ ଓ ପ୍ରଣାଳୀବଦ୍ଧ କରାଯାଇଅଛିଯେ, ଅକ୍ଷର ଗୁଡ଼ିକ ମୁଖସ୍ଥ କରି ମନେ ରଖିବା ସହଜ ଅଟେ । ଶରୀରର ଯେଉଁ ଯେଉଁ ସ୍ଥାନରୁ ଯେଉଁ ପ୍ରକାର ସ୍ୱର ବାହାରେ ଅକ୍ଷରଗୁଡ଼ିକ ତଦନୁଯାୟୀ ଭିନ୍ନ ଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଅଛି । ଯଥା ଓଷ୍ଠ୍ୟ, ଦନ୍ତ, କଣ୍ଠ୍ୟ, ଅନୁନାସିକ ଇତ୍ୟାଦି । ଏହି ହେତୁରୁ ଏହା ବାଞ୍ଛନୀୟ । ପରନ୍ତୁ ଆବଶ୍ୟକ ଯେ, ପଠନ ଶିକ୍ଷା ଦେବା ସମୟରେ ବର୍ଣ୍ଣମାଳା ଶିକ୍ଷା-ପ୍ରଣାଳୀ ଅବଲମ୍ବନ କରିବାକୁ ହେବ । କିନ୍ତୁ ଯେତେବେଳେ ( ା ) ( ି ) ( ୀ ) ପ୍ରଭୃତି ସ୍ୱରବର୍ଣ୍ଣର ମାତ୍ରା (କ) (ଖ) (ଗ) ପ୍ରଭୃତି ବ୍ୟଞ୍ଜନବର୍ଣ୍ଣ ସହିତ ମିଳିତ ହୁଏ, ମାତୃଭାଷା ପଢିବା ପକ୍ଷରେ ସୁଦ୍ଧା କିଞ୍ଚିତ୍ କଷ୍ଟ ହୁଏ । ଏପରି ସ୍ଥଳରେ ପ୍ରଥମେ ସଂଶ୍ଳେଷଣ ପ୍ରଣାଳୀ ତତ୍ପରେ ବିଶ୍ଳେଷଣ ପ୍ରଣାଳୀ ଅବଲମ୍ବନୀୟ । ଅର୍ଥାତ୍ ପ୍ରତ୍ୟେକ ଶବ୍ଦ ପ୍ରଥମେ ଉଚ୍ଚାରଣ କରିବାକୁ ବା ପଢିବାକୁ ହେବ ଏବଂ ତତ୍ପରେ ଏହାକୁ ବିଭିନ୍ନାଂଶରେ ବିଭକ୍ତ କରିବାକୁ ହେବ, ଅର୍ଥାତ୍ ଏହି ଶବ୍ଦକୁ ବନାନ କରିବାକୁ ହେବ ।

## ପାଠଦାନର ଧାରାକ୍ରମ :—

ପ୍ରଥମେ ଓଡ଼ିଆ ବର୍ଣ୍ଣମାଳା ଯେପରି ପଢ଼ାହୁଏ, ସେହିପରି ରୀତିରେ ବର୍ଣ୍ଣମାଳା ପଢ଼ାଇବାକୁ ହେବ । ପ୍ରତ୍ୟେକ ଅକ୍ଷରର ଧ୍ୱନି ସଙ୍ଗରେ ସେହି ଅକ୍ଷର ଆଦ୍ୟରେ ଥିବା କୌଣସି ପରିଚିତ ବସ୍ତୁ ବିଶେଷର ନାମ ମଧ୍ୟ ମନେ ରଖିବାକୁ ହେବ । ତାହାହେଲେ ଆକୃତି ସହିତ ଧ୍ୱନି ମିଳିତ ହେବ, ଏବଂ ଶିକ୍ଷାଦାନ ନିରାଲମ୍ବ ଅର୍ଥାତ୍ ବିଷୟ-ସମ୍ପର୍କ ଶୂନ୍ୟ ନହୋଇ ଶିକ୍ଷାର୍ଥୀମାନଙ୍କର ଚିତ୍ତାକର୍ଷକ ହେବ । ତତ୍ପରେ ଦୀର୍ଘ ସ୍ୱରମାନ ହ୍ରସ୍ୱସ୍ୱରରେ ବିଭକ୍ତ ହୋଇ ଶିକ୍ଷା ଦିଆଯିବ । ଯଥା (ଆ) = (ଅ+ଅ), (ଇ+ଇ)ଈ ଇତ୍ୟାଦି । ଏହାପରେ ଶିକ୍ଷା ଦିଆଯିବ ଯେ ( ା ), ( ି ), ( ୀ ), (େ), ପ୍ରଭୃତି ମାତ୍ର । ତତ୍ପରେ ସରଳସ୍ୱର ବା ସ୍ୱରବର୍ଣ୍ଣ ଓ ବ୍ୟଞ୍ଜନବର୍ଣ୍ଣ ମାନଙ୍କର ସନ୍ଧି ଉକ୍ତ ରୀତିରେ ଶିକ୍ଷା ଦିଆଯିବ । ଯଥା:— (କାକ) ଶବ୍ଦକୁ କ+ା+କ)ରେ ବିଶ୍ଳେଷଣ ନକରି ଏକତ୍ର ଉଚ୍ଚାରଣ କରାଯିବ । ଏଠା ସାବଧାନତା ସହକାରେ ମନେରଖିବା ଉଚିତ୍ ଯେ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷର ଶିଖି ଆୟତ୍ତାଧୀନ କରାଯିବା ପର୍ଯ୍ୟନ୍ତ ଶବ୍ଦପଠନ ଶିକ୍ଷାଦାନ ସ୍ଥଗିତ ରହିବ ନାହିଁ । ଦଶ, ବାରଗୋଟି ଅକ୍ଷର ଶିଖିଲା ଉତ୍ତାରେ ଛୁଆଙ୍କୁ ସେହି ଅକ୍ଷରମାନଙ୍କ ଦ୍ୱାରା ଗଠିତ ଶବ୍ଦମାନ ପଢିବାକୁ ଦିଆଯିବା ଉଚିତ୍ । ଯଥା ଛାତ୍ର (ଛ) ଅକ୍ଷର ପର୍ଯ୍ୟନ୍ତ ସମସ୍ତ ଅକ୍ଷର ଶିଖି ସାରିଲା ମାତ୍ରକେ ତାକୁ (ଚଛ) ଶବ୍ଦ ପଢ଼ାଇବାକୁ ହେବ ।

## (୩) ପ୍ରଣାଳୀ :-

ଆଜକାଲିର ରୀତି ଏହିଯେ ପ୍ରତ୍ୟେକ ଛାତ୍ର ଖଣ୍ଡେ ଖଣ୍ଡେ ବର୍ଣ୍ଣମାଳା ବହି ପଢିବେ । ଶିକ୍ଷକ ଶ୍ରେଣୀରେ ବୁଲି ଆସନ୍ତି ଏବଂ ପ୍ରତ୍ୟେକ ଛାତ୍ରଠାରେ ଦୁଇ ବା ତିନିମିନିଟ୍ ମାତ୍ର ବ୍ୟୟ କରନ୍ତି । ଯେଉଁ ଶ୍ରେଣୀରେ ୨୦ଜଣ ଛାତ୍ର ସେ ଶ୍ରେଣୀରେ ଶିକ୍ଷକ ଯଦି ୪୦ ମିନିଟ୍ ସମୟ ବ୍ୟୟ କରନ୍ତି ତାହାହେଲେ ପ୍ରତ୍ୟେକ ଛାତ୍ରଠାରେ ଦୁଇମିନିଟ୍ରୁ ଅଧିକ ସମୟ ବ୍ୟୟ କରାଯାଇନପାରେ ।

ଏତିକିମାତ୍ର ଯତ୍ନରେ କୌଣସି ଭଲଫଳ ସମ୍ଭବପର ନୁହେଁ । ବାଳକମାନଙ୍କର ବର୍ଣ୍ଣମାଳା ମାତ୍ର ସାଧନ କରିବାରେ ଯେ ମାସ ମାସ ଓ ବର୍ଷ ବର୍ଷ ବିତିଯାଏ ଏହା କିଛି ଆଶ୍ଚର୍ଯ୍ୟଜନକ ବିଷୟ ନୁହେଁ । ଏହି ଅସୁବିଧା ଏଡ଼ାଇବାକୁ ଶିକ୍ଷକ ସମୟ ସମୟରେ ଗୋଟିଏ ଅକ୍ଷର, ପଦ ବା ବାକ୍ୟ ଉଚ୍ଚସ୍ୱରରେ ପଢ଼ନ୍ତି ଏବଂ ଛାତ୍ରମାନଙ୍କୁ ନିଜ ନିଜ ବହିରେ ସେହି ଅକ୍ଷର ପଦ ବା ବାକ୍ୟଟି ପଢ଼ିବାକୁ ଆଦେଶ ଦିଅନ୍ତି । କେତେକ ବାଳକ ନିଜ ନିଜ ବହିରେ ସେହି ପ୍ରକାର ପଢ଼ନ୍ତି ସତ୍ୟ କିନ୍ତୁ ଅନ୍ୟମାନେ ଶିକ୍ଷକ ଗୋଟିଏ ଅକ୍ଷର ପଢିବାବେଳେ ଅନ୍ୟ ଅକ୍ଷର ପ୍ରତି ଚାହିଁଥାନ୍ତି । ଛାତ୍ର ଯେତେଥର ଏହିପରି କରେ, ସେତେଥର ସେ ଅକ୍ଷର ଓ ଶବ୍ଦ ମାନଙ୍କର ଅମୂଳକ ସମ୍ପର୍କ ଚିହ୍ନ ଶିଖେ, ତେଣୁ କରି ସେ ଠିକ୍ କଥା ନଶିଖି ଭୁଲ୍‌ଟି ଶିଖେ । ଏହି ଦୁଇ କାରଣରୁ ଏବଂ ଅଳ୍ପବୟସ୍କ ବାଳକମାନଙ୍କର ଦୃଷ୍ଟିଶକ୍ତିର ପ୍ରବଳତା ହେତୁରୁ ଶିକ୍ଷକ ମହାଶୟଙ୍କର ପ୍ରଥମଶ୍ରେଣୀରେ ବହିର ବ୍ୟବହାର ଉଠାଇଦେବା ଉଚିତ୍ ଏବଂ ତତ୍‌ପରିବର୍ତ୍ତେ ବିଶୃଙ୍ଖଳା ଭାବରେ ଲିଖିତ ଅକ୍ଷରମାଳା କାର୍ଡ (ରିଡ଼ଂସିଟ୍) ଓ ବ୍ଲାକ୍‌ବୋର୍ଡ଼ ବ୍ୟବହାର କରିବା ଉଚିତ୍ । ରିଡ଼ଂସିଟ୍ ବା ବର୍ଣ୍ଣମାଳାଚିତ୍ର (ଲେଟରକାର୍ଡ଼) ରୁ କିମ୍ବା ବ୍ଲାକ୍‌ବୋର୍ଡରେ ନିଜେ ଲେଖିଥିବା ଅକ୍ଷର ବା ଶବ୍ଦମାନଙ୍କରୁ ଶିକ୍ଷକ ପ୍ରତ୍ୟେକ ଅକ୍ଷର ବା ଶବ୍ଦ ପ୍ରତି ନିର୍ଦ୍ଦେଶକ ଦଣ୍ଡ ଦ୍ୱାରା ଛାତ୍ରମାନଙ୍କୁ ଦେଖାଇଦେବେ । ତତ୍‌ପରେ ଛାତ୍ରମାନେ ତାହାକୁ ଅନୁସରଣ କରି ପଢ଼ିବେ । ଶିକ୍ଷକ କେତେ କେତେବେଳେ ଛାତ୍ରମାନଙ୍କୁ ଜଣକ ପରେ ଜଣେ ପଢିବାକୁ କହିବେ । କେତେବେଳେ ବା କୌଣସି ନିର୍ଦ୍ଦିଷ୍ଟ ଅକ୍ଷରମାନ ନିର୍ଦ୍ଦେଶ କରିବାକୁ କହିବେ, ଏବଂ ଯାହାକୁ ତାକୁ ଘନ ଘନ ପ୍ରଶ୍ନ ପଚାରିବାଦ୍ୱାରା ଶିକ୍ଷକ ଶ୍ରେଣୀଟିକୁ ସବୁବେଳେ ମନୋଯୋଗୀ ଓ କାର୍ଯ୍ୟ ନିଯୁକ୍ତ ରଖିବେ । ସର୍ବପ୍ରଥମେ ଶବ୍ଦର ଶୁଦ୍ଧ ଉଚ୍ଚାରଣ ଶିକ୍ଷାଦେବା ଉଚିତ୍ । କୌଣସି ପ୍ରକାରରେ ଉଚ୍ଚାରଣ ଦୋଷ ଅସଂଶୋଧିତ ଭାବରେ ଛାଡ଼ିଦେବା ଉଚିତ୍ ନୁହେଁ । ଧୀର, ସ୍ପଷ୍ଟ ଓ ସୁଚିନ୍ତିତ ଭାବରେ ଉଚ୍ଚାରଣ କଲେ ଉଚ୍ଚାରଣଗତ ଦୋଷ ଦୂର ହେବ । ଏହି ଶ୍ରେଣୀରେ ଶିଶୁ କେଉଁ ଧ୍ୱନି ଦେହର କେଉଁ ସ୍ଥାନରୁ

ବାହାରେ ତାହା ଜାଣେ ନାହିଁ । ତେବେ ଉଚ୍ଚାରଣ ଶିକ୍ଷାଦାନ ପାଇଁ ଧ୍ୱନିର ପୁନରାବୃତ୍ତି ମାତ୍ର ଉତ୍କୃଷ୍ଟ ପନ୍ଥା ନୁହେଁ, ବରଂ ଦେହର କେଉଁ ନିର୍ଦ୍ଦିଷ୍ଟ ସ୍ଥାନରୁ କେଉଁ ନିର୍ଦ୍ଦିଷ୍ଟ ଧ୍ୱନି ବାହାରେ ତତ୍ପ୍ରତି ତାହାର ମନୋଯୋଗ ଆକୃଷ୍ଟ ହେବା ଆବଶ୍ୟକ ।

ଯେଉଁ ଅକ୍ଷରମାନ ଛାତ୍ରମାନେ ଶିଖିଅଛନ୍ତି, ସେହି ଅକ୍ଷର ମାନଙ୍କ ଦ୍ୱାରା ନ୍ୟାୟସଙ୍ଗତ ଭାବରେ ଯେତେ ପ୍ରକାର ଶବ୍ଦ ଗଠିତ ହୋଇପାରେ, ସେହି ଶବ୍ଦମାନ ଗଠନ ବାଳକମାନଙ୍କୁ ଶିକ୍ଷା ଦେବାହିଁ ପଠନାଭ୍ୟାସ ଲାଭର ସର୍ବୋତ୍କୃଷ୍ଟ ପନ୍ଥା । ବାଳକ ଯେତେବେଳେ (ଆ) + (ଜ) ଅକ୍ଷର ଶିଖିବ, ଶିକ୍ଷକ ତାକୁ (ଆ)+(ଜ) ଏବଂ ଗ + ଜ ମିଳନରେ ଗଠିତ ଶବ୍ଦମାନ ଉଚ୍ଚାରଣ କରିବାକୁ କହିବେ । ନୂତନ ନୂତନ ଶବ୍ଦ ଯୋଜନା କରିବାରେ ଶିକ୍ଷକ ଯେତେଦୂର ପାରଗ ହେବେ (ଅବଶ୍ୟ ଏହି କୌଣସି ବସ୍ତୁ ବିଶେଷର ହେଲେ ନାମ ହୋଇଥିବା ) ଛାତ୍ର ଯେତେଦୂର ପଢ଼ିବାରେ ପାରଗ ହେବ ।

ଶେଷକଥା··· ଶିକ୍ଷକ ପ୍ରତ୍ୟେକ ସମୟରେ ଜ୍ୟାମିତିକ ପ୍ରଣାଳୀକୁ ଆଖି ଆଗରେ ରଖିବା ସହିତ ୨ ଆଞ୍ଚଳିକ ଭାଷାପ୍ରତି ସଜାଗ ରହି ନିଜର କୌଶଳ ପ୍ରୟୋଗ କରି ଶିଶୁ ପଠନକୁ ହୃଦୟଙ୍ଗମ କରିବା ପାଇଁ ଶିକ୍ଷକ କି ପ୍ରକାର ପଦ୍ଧତି ଅବଲମ୍ବନ କରି ପଠନ ଶିକ୍ଷା ଦେଲେ, ଶିଶୁ ତାହା ଠିକ୍ ଭାବରେ ହୃଦୟଙ୍ଗମ କରି ପାରିବ ତାହା ଶିକ୍ଷକଙ୍କ ଉପରେ ନିର୍ଭର କରେ । ଉପରୋକ୍ତ ପ୍ରଣାଳୀ ଅବଲମ୍ବନ ଦ୍ୱାରା ବିଭିନ୍ନ ଭାଷା ଭାଷି ଅଞ୍ଚଳରେ ପଠନ ଶିଶୁ ସହଜରେ ଗ୍ରହଣ କରିପାରିବ ବୋଲି ଆଶା କରୁଛି ।

**ଶ୍ରୀ ପ୍ରଭାକର ମିଶ୍ର,** ପ୍ରଃ ଶିକ୍ଷକ
ଶହାଦନଗର ଉ.ପ୍ରା ବିଦ୍ୟାଳୟ (କ)
ତା ୨୫।୦୭।୮୮

# ପ୍ରାଥମିକ ବିଦ୍ୟାଳୟରେ ଗଣିତ ଶିକ୍ଷାର ପ୍ରୟୋଜନୀୟତା

ଜୀବନଯାତ୍ରା ନିର୍ବାହ କରିବା ପାଇଁ ଆମ୍ଭମାନଙ୍କୁ ବିଭିନ୍ନ କାର୍ଯ୍ୟ କରିବାକୁ ପଡ଼ୁଅଛି । ସେ ସବୁଥିରେ ଗଣିତର ସମ୍ବନ୍ଧ ବହୁ-ପରିମାଣରେ ଥିବାର ଦେଖାଯାଏ । ଯେବେ ଦିନ୍‌ଦିନ୍ ଆମ୍ଭେମାନେ ପାଠଶାଳାରେ ହେଉ କିମ୍ବା ଉଚ୍ଚ ବିଦ୍ୟାଳୟରେ ହେଉ ଶିକ୍ଷାଲାଭ କରିବାବେଳେ ଗଣିତ ବିଦ୍ୟା ଭଲ କରି ଶିଖି ନଥାଉଁ ତେବେ ଘରେ ଆମ୍ଭମାନଙ୍କର ନିଜେ ନିଜେ ଗଣିତ ବିଦ୍ୟା ପ୍ରୟୋଜନାନୁସାରେ କିଛି ଶିକ୍ଷା କରିବା ନିତାନ୍ତ ଆବଶ୍ୟକ ହୋଇପଡ଼ିବ । ତାହା ନକଲେ ଆମ୍ଭେମାନେ ଆମ୍ଭମାନଙ୍କର ନିତ୍ୟ ପ୍ରୟୋଜନୀୟ ପଦାର୍ଥ କିଛିମାତ୍ର କିଣି ପାରିବୁ ନାହିଁ । ଅତଏବ ଏଥିରୁ ଏହା ଜଣାଯାଉଅଛି ଯେ ଗଣିତ ବିଦ୍ୟା ଶିକ୍ଷା କରିବା ଆମ୍ଭମାନଙ୍କର ଦୈନିକ ଜୀବନଯାତ୍ରା ନିର୍ବାହ ପକ୍ଷରେ ନିତାନ୍ତ ପ୍ରୟୋଜନୀୟ । ଆମ୍ଭମାନଙ୍କର ଅନେକ ଶିକ୍ଷଣୀୟ ବିଷୟ ବିଜ୍ଞାନ ବିଦ୍ୟାର ଅନ୍ତର୍ଭୁକ୍ତ ହୋଇ ରହିଅଛି । ସେ ସବୁ ଶିକ୍ଷା କରିବାକୁ ହେଲେ ଆମ୍ଭମାନଙ୍କର ଗଣିତ ବିଦ୍ୟାରେ ସମ୍ୟକ୍ ଜ୍ଞାନ ଅର୍ଜନ କରିବା ନିତାନ୍ତ ଆବଶ୍ୟକ । ଅତଏବ ଏଥିରୁ ଏହା ପ୍ରତିପନ୍ନ ହେଉଅଛି ଯେ ଯେଉଁ ଛାତ୍ରମାନେ ପର୍ଯ୍ୟବେକ୍ଷଣରେ ଯଥାର୍ଥତା ଏବଂ ମାନସିକଯୁକ୍ତି-ଶକ୍ତି ଲାଭ କରିବା ପାଇଁ ଅଭିଳାଷୀ ସେମାନଙ୍କ ପକ୍ଷରେ ସର୍ବାଦୌ ଗଣିତ ବିଦ୍ୟା ଶିକ୍ଷା କରିବା ବାଞ୍ଛନୀୟ ।

ଗଣିତବିଦ୍ୟା ଶିଶୁମାନଙ୍କର ମାନସିକ ଶକ୍ତିର ବିକାଶ ସାଧନର ମୁଖ୍ୟ ଉପାୟ ସ୍ୱରୂପ ଥିବାରୁ ପ୍ରାଥମିକ ବିଦ୍ୟାଳୟ-ମାନଙ୍କର ପାଠ୍ୟ ନିର୍ଘଣ୍ଟର ଅନ୍ତର୍ଭୁକ୍ତ ଏକ ବିଶେଷ ପ୍ରୟୋଜନୀୟ ବିଷୟ ରୂପେ ପରିଗଣିତ ହୋଇଅଛି । କୌଣସି ବିଷୟକୁ ପ୍ରମାଣିତ ସତ୍ୟ ବୋଲି ଆଗରୁ ଗ୍ରହଣ କରିବା ଉଚିତ ନୁହେଁ; ପ୍ରତ୍ୟେକ ସତ୍ୟ ପ୍ରମାଣ ସାପେକ୍ଷ ଅଟେ ଏବଂ ପ୍ରତ୍ୟେକ ନୂତନ ସତ୍ୟ ପୂର୍ବବର୍ତ୍ତୀ ପ୍ରମାଣିତ ସତ୍ୟକୁ ଆଧାରିତ । ଏହିପରି ଗଣିତ ବିଦ୍ୟା ଶିକ୍ଷା ଦ୍ୱାରା

ଶିକ୍ଷା ନିଜର ଅନ୍ତର୍ଭୂକ୍ତ ପରିଲକ୍ଷିତ ତଥ୍ୟ ପ୍ରମାଣିତ ନହେବା ପର୍ଯ୍ୟନ୍ତ ତଥ୍ୟାନୁସନ୍ଧାନ କରିବା, କାର୍ଯ୍ୟ କାରଣର ସମ୍ବନ୍ଧ କ୍ରମାନୁସାରେ ବିଚାର କରିବା ଓ ତର୍କମାଳା ମଧ୍ୟରେ ସୋପାନକୁ ସୋପାନ କ୍ରମାନୁସାରେ ଅଗ୍ରସର ହେବା, ଏହି ବିଷୟମାନଙ୍କର ଶିକ୍ଷାଲାଭ କରିଥାଏ । ପୁଣି ଛାତ୍ରମାନେ ଏହିପରି ଭାବରେ, ସୁସଂଗଠିତ ପ୍ରଣାଳୀରେ, ବିଷୟ ଗୁଡ଼ିକ ସଜ୍ଜିତ କରିବାର ବିଶେଷ ପ୍ରୟୋଜନୀୟତା ହୃଦୟଙ୍ଗମ କରିଥାନ୍ତି ଏବଂ ଶୁଦ୍ଧରୂପେ ଓ ପରିଷ୍କୃତ ଭାବରେ ଭାବ ପ୍ରକାଶ କରି ପାରନ୍ତି । କେଉଁଟି ପ୍ରୟୋଜନୀୟ ଓ କେଉଁଟି ଅପ୍ରୟୋଜନୀୟ ବାଛିବାକୁ ସଙ୍ଗେ ସଙ୍ଗେ ନିଜର ଉଦ୍ଦେଶ୍ୟ ସାଧନ ନିମିତ୍ତ ଯାହା ନିଜର ଆବଶ୍ୟକ, ତାହା ତତ୍କ୍ଷଣାତ ଚିହ୍ନିବାକୁ ଶିକ୍ଷା ପାଇଥାନ୍ତି; ଆହୁରି ମଧ୍ୟ ଦୃଢ଼ ଅଭ୍ୟାସ ଲାଭ କରିବାରେ ଲାଗି ପଡ଼ନ୍ତି । ଏହି ଅଭ୍ୟାସ ସେମାନଙ୍କ ପକ୍ଷରେ ଅନ୍ୟାନ୍ୟ ବିଷୟ ଆଲୋଚନା କରିବା ବିଷୟରେ ପ୍ରୟୋଜନୀୟ ହୁଏ । ଏହିପରି ଭାବରେ ସେମାନେ ପ୍ରତ୍ୟେକ ବିଷୟରେ ସଫଳ ପ୍ରଯତ୍ନ ହେବା ଦ୍ୱାରା କ୍ରମେ କ୍ରମେ ସେମାନଙ୍କର ନିଜର ଶକ୍ତି ଉପରେ ଦୃଢ଼ ଆଶା ଜନ୍ମେ । ସେମାନେ ଏତଦ୍ୱାରା ଆତ୍ମନିର୍ଭରଶୀଳ ଏବଂ ଅଧ୍ୟବସାୟୀ ହୁଅନ୍ତି ।

## ୧ । ମାନସାଙ୍କ

ପ୍ରାଥମିକ ବିଦ୍ୟାଳୟରେ ଲିଖିତାଙ୍କ ଅପେକ୍ଷା ମାନସାଙ୍କ ଅଧିକତର ପ୍ରୟୋଜନୀୟ । ପୂର୍ବରେ କଥିତ ହୋଇଅଛି ଯେ ନିମ୍ନଲିଖିତ ଉଦ୍ଦେଶ୍ୟ ସାଧନ ନିମିତ୍ତ ଗଣିତ ବିଦ୍ୟା ଶିକ୍ଷା ଦିଆଯାଇଥାଏ ଯଥା :— (୧) ଗଣିତ ବିଦ୍ୟାର ଶିକ୍ଷା ମାନବର ଜୀବନଯାତ୍ରା ନିର୍ବାହ ପକ୍ଷରେ ଆଂଶିକ ରୂପେ ପ୍ରୟୋଜନୀୟ (୨) ଏହା ଅନ୍ୟାନ୍ୟ ଅତିରିକ୍ତ ବିଷୟରେ ଏକ ପ୍ରକାର ଉପାୟ ସଦୃଶ ଅଟେ । ବର୍ତ୍ତମାନ ଏହା ପ୍ରତିପନ୍ନ ହେଲା ଯେ ମାନସାଙ୍କ ଶିକ୍ଷା ଜନସାଧାରଣଙ୍କର ଜୀବନଯାତ୍ରା ନିର୍ବାହ ପକ୍ଷରେ ବିଶେଷ ପ୍ରୟୋଜନୀୟ ଅଟେ । ବ୍ୟବସାୟ ପରିଚାଳନାରେ କେହି ପଦାର୍ଥମାନଙ୍କର ମୂଲ୍ୟ କିମ୍ବା

ମୂଲଆମାନଙ୍କର ମଜୁରି କାଗଜରେ ଅଙ୍କ କରି ନିର୍ଦ୍ଧାରଣ କରିବାର ଆବଶ୍ୟକ ପଡ଼େନାହିଁ । ଯଦି ଦୋକାନୀ ପ୍ରତିଦିନ କାଗଜ କଲମରେ ପ୍ରତ୍ୟେକ ଜିନିଷର ମୂଲ୍ୟ ନିରୂପଣ କରିବାକୁ ବସୁଥାନ୍ତା ତେବେ ତା ପକ୍ଷରେ ସାଧାରଣ କାରବାର କରିବା ଅତ୍ୟନ୍ତ ବିରକ୍ତିଜନକ ହୋଇପଡ଼ନ୍ତା । ଯେଉଁ ବେପାରୀ ସାଧାରଣ କାରବାରରେ ଲାଭ କ୍ଷତିର କଥା କାଗଜ ପେନ୍‌ସିଲ୍ ନହେଲେ ଠିକ୍ କରିପାରେ ନାହିଁ, ତାହା ଅପେକ୍ଷା ଯେଉଁ ଲୋକ ତୁରନ୍ତ ତୁରନ୍ତ ସେହିକ୍ଷଣି ନିଜ କାରବାରର ଲାଭ କ୍ଷତିର ବିଷୟ ହିସାବ କରିପାରେ ତାର କାରବାର ସୁବିଧାରେ ଚଳେ । ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଯେଉଁ ଗଣିତ ବିଦ୍ୟା ଶିକ୍ଷା ଦିଆଯାଏ, ତାହା ମଧ୍ୟ-ବିଦ୍ୟାଳୟ-ମାନଙ୍କର ଶିକ୍ଷା ଦିଆହେଉଥିବା ଗଣିତ ବିଦ୍ୟାର ମୂଳଭିତ୍ତି ସ୍ୱରୂପ ଅଟେ । ଶିଶୁଛାତ୍ରମାନେ ଯେତେ ପରିମାଣରେ ଗଣିତ ସମ୍ପର୍କୀୟ ପ୍ରାଥମିକ ତୁଣ୍ଡ ଅଙ୍କମାନ ପ୍ରଶ୍ନ ପଚାରିବା ସଂଗେ ସଂଗେ ସମାଧାନ କରିବାକୁ ସମର୍ଥ ହୁଅନ୍ତି, ସେମାନେ ସେତେ ପରିମାଣରେ ଉଚ୍ଚ ଗଣିତ ଶିକ୍ଷା କରିବା ପାଇଁ ସାମର୍ଥ୍ୟ ଲାଭ କରିଥାନ୍ତି । ଲିଖିତାଙ୍କ ଅପେକ୍ଷା ତୁଣ୍ଡଅଙ୍କ ସମାଧାନ କରିବା କାଳରେ ଶିଶୁଛାତ୍ରମାନଙ୍କର ମାନସିକ ବୃତ୍ତି ଉତ୍ତମ ରୂପେ ବିକଶିତ ହୁଏ ।

ଅନ୍ୟର କାର୍ଯ୍ୟ ପ୍ରଣାଳୀକୁ ଅନୁକରଣ କରି ଅଭିନୟ କରିବାହିଁ ଶିଶୁମାନଙ୍କର ଏକ ସ୍ୱାଭାବିକ ପ୍ରବୃତ୍ତି । ସେମାନଙ୍କର ଏହି ପ୍ରବୃତ୍ତିକି କାର୍ଯ୍ୟରେ ପରିଣତ କରିବାକୁ ଏହି ଗଣିତ ବିଦ୍ୟା ଶିକ୍ଷା ବିଷୟକୁ ଆଖି ଆଗରେ ରଖିବାକୁ ପଡ଼ିବ । ସେମାନଙ୍କୁ କ୍ରେତା ଓ ବିକ୍ରେତାର କାର୍ଯ୍ୟ ଅନୁକରଣ କରି ଅଭିନୟ କରିବାକୁ ପ୍ରବର୍ତ୍ତାଇବା ଉଚିତ୍ । ଏପରି ଅବସ୍ଥାରେ ସେମାନେ କିଣାବିକା ହେବା ଭଳି ପଦାର୍ଥମାନଙ୍କ ପରିବର୍ତ୍ତେ ପଥର, ଇଟା, ବାଲିଗରଡ଼ା, ମଞ୍ଜି ଓ ବାଲି ଇତ୍ୟାଦି ଶିକ୍ଷା କାର୍ଯ୍ୟର ସାହାଯ୍ୟ ନିମିତ୍ତ ବ୍ୟବହାର କରିବେ ।

**୩ । କତିପୟ ନିୟମ ଶିକ୍ଷକମାନଙ୍କର ସ୍ମରଣ ରଖିବା ବିଧେୟ ।**

(୧) ପ୍ରଥମତଃ ଶିକ୍ଷକ ଶିଶୁଛାତ୍ରମାନଙ୍କୁ ବହୁସଂଖ୍ୟକ ସରଳ ଓ

ଏକାଭଳି ଗାଣିତିକ ପ୍ରଶ୍ନଗୁଡ଼ିଏ ସମାଧାନ କରିବାକୁ ଦେବେ । ପ୍ରଶ୍ନଗୁଡ଼ିକ ଏପରି କୌଶଳରେ ଗଠିତ ହୋଇଥିବ ଯେପରିକି ଶିଶୁଛାତ୍ରମାନେ ନିଜେ ନିଜେ ତନ୍ମଧ୍ୟରୁ ସୂତ୍ରଟି ହୃଦୟଙ୍ଗମ କରିପାରିବେ । କ୍ରମେ କ୍ରମେ ଏହିପରି ଶିଶୁ ଛାତ୍ରମାନେ ନିଜେ ନିଜେ ସୂତ୍ରର ବିସ୍ତାର ମଧ୍ୟ କରିବାକୁ ସମର୍ଥ ହେବେ । ତତ୍‌ପରେ ଆବଶ୍ୟକ ହେଲେ ଶିକ୍ଷକ ସେମାନଙ୍କୁ ଆହୁରି ଅଧିକ ସଂଖ୍ୟକ ଦୃଷ୍ଟାନ୍ତ ସାହାଯ୍ୟରେ ସୂତ୍ରଟି ବ୍ୟାଖ୍ୟା କରି ବୁଝାଇ ଦେବେ ।

(୨) ମୁଖ୍ୟ-ଅଙ୍କରେ ଶିଶୁଛାତ୍ରମାନଙ୍କର ଅଭ୍ୟାସ ରହିବା ଆବଶ୍ୟକ । ଏହି ଅଭ୍ୟାସ ମଧ୍ୟ ଲିଖିତାଙ୍କର ଅନ୍ତର୍ଭୁକ୍ତ କଠିନ ଅଙ୍କମାନ ସମାଧାନ କରିବା ବିଷୟରେ ସାହାଯ୍ୟ କରିଥାଏ ।

(୩) ଶିଶୁଛାତ୍ରମାନଙ୍କର ବୁଦ୍ଧିଶକ୍ତିର ପରିମାଣର କମ୍‌ବେଶୀ ଦୃଷ୍ଟିରୁ ପ୍ରଶ୍ନଗୁଡ଼ିକ କ୍ରମାନୁସାରେ ସଜାଇ ରଖିବା ଉଚିତ । ପ୍ରତ୍ୟେକ ଶିଶୁ ଛାତ୍ର ଯେ ପ୍ରତ୍ୟେକ ପ୍ରଶ୍ନର ଉତ୍ତର ଦେବେ ଏପରି ଆଶା କରିବା ଅନୁଚିତ୍ ।

(୪) ସଂଖ୍ୟା ସହିତ କୌଣସି ବସ୍ତୁ ବିଶେଷର ନାମ ସଂଯୁକ୍ତ ଥିବା ଅଥବା ଅବଚ୍ଛିନ୍ନ ସଂଖ୍ୟା ସମ୍ବଳିତ ଏକ ବା ତତୋଧିକ ଅଙ୍କ ପ୍ରଶ୍ନମାନ ସମାଧାନ କରିବା ନିମିତ୍ତ ଶିଶୁଛାତ୍ରମାନଙ୍କୁ ନିକଟ କେବେହେଁ କୌଣସି ପାଠର ଶିକ୍ଷା ପ୍ରଦାନ ବିଷୟରେ ଅବସର ହେବ ନାହିଁ ।

(୫) ଲିଖିତାଙ୍କ ସମାଧାନ କରିବା ସମୟରେ ଶିଶୁଛାତ୍ରମାନେ ଯେପରି ପରସ୍ପରର ଅନୁକରଣ ନକରନ୍ତି ବା ଅନ୍ୟ ଦ୍ୱାରା କଷା ହୋଇଥିବା ଗଣିତକୁ ଆପଣାର ବୋଲି ନିର୍ଦ୍ଦେଶ ନ କରନ୍ତି ସେଥିପ୍ରତି ଶିକ୍ଷକ ଦୃଷ୍ଟି ଦେଇଥିବେ । ଏଠାରେ ସୂଚନା ଦିଆଯାଇପାରେ ଯେ ଏକା ସ୍ତରର ଭିନ୍ନ ଭିନ୍ନ ଅଙ୍କ ଭିନ୍ନ ଭିନ୍ନ ଛାତ୍ରମାନଙ୍କୁ ସମାଧାନ ନିମିତ୍ତ ଦେବେ । ତେବେ କେହି କାହାଠାରୁ ଅନୁକରଣ କରିପାରିବେ ନାହିଁ ।

(୬) ଶିକ୍ଷକମାନେ ପ୍ରଥମ ଶିକ୍ଷାର୍ଥୀମାନଙ୍କୁ ଅଙ୍କ ଶିକ୍ଷାର ଆରମ୍ଭରୁ ପରିଷ୍କୃତ ପରିଚ୍ଛନ୍ନ ରୂପେ ଓ ଠିକ୍ ଧାରାନୁସାରେ ଅଙ୍କଗୁଡ଼ିକ କଷିବାକୁ ଅଭ୍ୟସ୍ତ କରାଇବେ ।

(୭) ପୂର୍ବରୁ ଶିଖିଥିବା ସୂତ୍ର ସମ୍ବନ୍ଧୀୟ ଅଙ୍କମାନ କଷିବାକୁ ଦେଇ ଶିକ୍ଷକ ସେହି ସେହି ସୂତ୍ର ମାନଙ୍କର ପୁନରାଲୋଚନା କରାଇବେ ।

## ୪ । ଶିକ୍ଷାଦାନର ଉପକରଣ ।

(୧) ସଂଖ୍ୟାଗଣନା ଶିକ୍ଷାଦେବା ନିମିତ୍ତ ବିଦ୍ୟାଳୟରେ ଚିକଣ ମାଟିର ଗୋଲି ୬ ଇଞ୍ଚରୁ ୮ ଇଞ୍ଚ ପର୍ଯ୍ୟନ୍ତ ଲମ୍ବା କାଠି ଏବଂ ମଞ୍ଜି ରଖିବା ଉଚିତ୍ ।

(୨) ଦଶକ ଓ ଶତକ ପ୍ରଭୃତି ସଂଖ୍ୟାମାନ ଶିକ୍ଷା ଦେବା ନିମିତ୍ତ ମଞ୍ଜି କମ୍ବା ଚିକଣ ମାଟିର ଗୋଲପୂର୍ଣ୍ଣ ଥଳି, ଦଶ ଦଶ ଖଣ୍ଡ ହିସାବରେ ଏବଂ ଶହେ ଶହେ ଖଣ୍ଡ ହିସାବରେ ବନ୍ଧା ହୋଇଥିବା ଦିଆସିଲି କାଠିର ବିଡ଼ା ଓ କାଠି ବିଡ଼ାମାନ ବିଦ୍ୟାଳୟରେ ରଖିବା ଉଚିତ୍ ।

(୩) ସୁବିଧା ଥିଲେ ବିଦ୍ୟାଳୟରେ ଗୋଟିଏ ଗଣନକ ଯନ୍ତ୍ର ରଖାଯାଇ ପାରେ ।

(୪) ବ୍ଲାକ୍‌ବୋର୍ଡ, ଚକ୍‌ଖଡ଼ି ଏବଂ ଡ଼ଷ୍ଟର ଓ ପଏଣ୍ଟର ଶିକ୍ଷକମାନଙ୍କର ବ୍ୟବହାର ନିମିତ୍ତ ରଖାଯିବା ଏକାନ୍ତ ଆବଶ୍ୟକ ।

(୫) ବିଦ୍ୟାଳୟଟି ଯେଉଁ ଅଞ୍ଚଳରେ ଅବସ୍ଥିତ, ସେହି ଅଞ୍ଚଳରେ ମିଳିଥିବା ପଦାର୍ଥମାନଙ୍କ ମଧ୍ୟରୁ ବାଛି ବାଛି ଶିକ୍ଷକ ତାହାଙ୍କର ଶିକ୍ଷାଦାନ ସରସ ସୁନ୍ଦର ନିମିତ୍ତ ଉପକରଣମାନ ସଂଗ୍ରହ କରି ରଖିବେ । ସେ ତାହାଙ୍କର ପାଠଦାନ ନିମିତ୍ତ ଯେ କୌଣସି ପ୍ରକାରର ମାଟି ଗୋଲି, ମଞ୍ଜି, ଫୁଲ, ଫଳ, ଇଟା, ଖେଳନା, ଚିଡ଼ କାଠି, ଗୋଡ଼ି, ପ୍ରଭୃତି ବ୍ୟବହାର କରିପାରନ୍ତି ।

## ୫ । ଗଣିତ ଶିକ୍ଷାଦାନର ଉଦ୍ଦେଶ୍ୟ ।

(୧) ସଂଖ୍ୟାମାନଙ୍କ ମଧ୍ୟରେ ପରସ୍ପର ସମ୍ବନ୍ଧ ନିତ୍ୟ ଅଟେ । ଅର୍ଥାତ ୩ଖଣ୍ଡ ବହି ସଙ୍ଗରେ ୨ ଖଣ୍ଡ ବହି ମିଶି ୫ଖଣ୍ଡ ହେଉ ବା ୩ଟି କଲମ ସଙ୍ଗରେ ୨ଟି କଲମ ମିଶି ୫ଟି କଲମ ହେଉ, ଯାହାହେଉ ପଛକେ. ୩+୨ ଯେ ୫ ସହିତ ସମାନ ଏହା ସର୍ବଦା ସତ୍ୟ ଅଟେ । ସଖ୍ୟାମାନଙ୍କ ମଧ୍ୟରେ ଏହି ପ୍ରକାର ସମ୍ବନ୍ଧ ବିଦ୍ୟମାନ ଥିବା ବିଷୟ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ, ଶିକ୍ଷୟିତ୍ରୀ ମାନଙ୍କର ଶିଶୁଛାତ୍ରମାନଙ୍କୁ ସର୍ବପ୍ରଥମରେ ବୁଝାଇ ଦେବା ଉଚିତ୍ ।

(୨) ସର୍ବସାଧାରଣଙ୍କର ପ୍ରୟୋଜନୀୟତା ଏବଂ ଛାତ୍ରମାନଙ୍କର ଶକ୍ତି ପ୍ରତି ଦୃଷ୍ଟି ରଖି ସୁବିବେଚନା ପୂର୍ବକ, ଶିକ୍ଷକ-ଶିକ୍ଷୟିତ୍ରୀ ନିଜ ଚେଷ୍ଟା ସହ ଛାତ୍ରମାନଙ୍କ ସହାୟତାରେ ଅଳ୍ପ ଖର୍ଚ୍ଚରେ ବିଭିନ୍ନ ଶିକ୍ଷାଦାନ ଉପକରଣ ସଂଗ୍ରହ କରି ଶିକ୍ଷାଦାନକୁ ସରସ ସୁନ୍ଦର କରିପାରିବେ ।

ଯଥା— ଶ୍ରେଣୀରେ ଶୃଙ୍ଖଳା ରକ୍ଷା ନିମିତ୍ତ ଛୋଟ ଛୋଟ କୋମଳମତି ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷକ ଦଳ ଦଳ କରି ବସାଇ ଗଣିତ ଶିକ୍ଷାଦାନ ପାଇଁ ଗୋଟିଏ ଗୋଟିଏ ଦଳ ଉପରେ ଯଥାକ୍ରମ, ଗୋଡ଼ି, ମଞ୍ଜି, କାଠି,ମାଟିଗୋଲି, ମାଟିଚେଣ୍ଡୁ ପ୍ରସ୍ତୁତକରିବା ପାଇଁ ଚେଷ୍ଟା କରିବେ । ଏହି ଦଳଗତ କାର୍ଯ୍ୟ ଆରମ୍ଭ କରିବା ବେଳେ ଶିକ୍ଷକ ନିଜକୁ ଛାତ୍ରମାନଙ୍କ ସହ ସାମିଲ କରି (ନିଜକୁ ଜଣେ ଛାତ୍ର ମନେକରି) ସେମାନଙ୍କ ସହ ସହଯୋଗ କରିବେ । ଏହା ଦଳଗତ ଶିକ୍ଷା ପ୍ରାଥମିକ ବିଦ୍ୟାଳୟରେ ଭିନ୍ନ ଶ୍ରେଣୀରେ କରାଇଲେ ଛାତ୍ରଛାତ୍ରୀମାନେ ଅଳ୍ପ ଖର୍ଚ୍ଚରେ ପାଠ୍ୟ ଉପକରଣ ସଂଗ୍ରହ କରିବାରେ ସମର୍ଥ ହେବେ ।

ଏହି ଉପକରଣ ଗଠିତ ଶିକ୍ଷାରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ବିଜ୍ଞାନ ଶିକ୍ଷାପାଇଁ ବିଶେଷ ସହାୟକ ହେବ । ଏଥିପାଇଁ ଶିକ୍ଷକ ସଚେତନ ହେବା ଆବଶ୍ୟକ । •

# ପ୍ରାଥମିକ ବିଦ୍ୟାଳୟରେ ଗଳ୍ପ କହିବାର ଉଦ୍ଦେଶ୍ୟ

କାହିଁକି ଗଳ୍ପ କହିବାକୁ ହୁଏ ।

[ଗଳ୍ପ ପଢ଼ିବା ଅପେକ୍ଷା ଗଳ୍ପ କହିବା କାହିଁକି ଅଧିକ ଫଳଦାୟକ ?]

ଏହାର ଅନ୍ତରଙ୍ଗ ସୁବିଧା ଏହି ଯେ ଏଥିରେ ବକ୍ତାର ବ୍ୟକ୍ତିଗତ ଚରିତ୍ରର ମାଧୁର୍ଯ୍ୟ ସଂଯୁକ୍ତ ହୁଏ । ଯେତେବେଳେ ତୁମ୍ଭେ ମନେ ପ୍ରସ୍ତୁତ କରି ଗଳ୍ପ କୁହ, ଶ୍ରୋତା ଗଳ୍ପଟିକୁ ଶିଖେ । ଏହା ସହିତ ସେ ଆହୁରି ଶିଖେ ତୁମ୍ଭର ଗଳ୍ପଟିର ବୋଧ ଓ ଗୁଣବୋଧ ।

[ବିଦ୍ୟାଳୟରେ ଗଳ୍ପ କହିବାର ଉଦ୍ଦେଶ୍ୟ ।] ଆନନ୍ଦ ଦାନହିଁ ଗଳ୍ପ କହିବାର ମୁଖ୍ୟ ଉଦ୍ଦେଶ୍ୟ । ଏହି ଆନନ୍ଦର ଅଭ୍ୟନ୍ତର ଦେଇ ଆତ୍ମ ଚୈତନ୍ୟର ଉଦ୍ଦୀପନ ଓ ପରିପୋଷଣ ଏହାର ଗୌଣ ଉଦ୍ଦେଶ୍ୟ । ଗଳ୍ପଦ୍ୱାରା ସର୍ବାପେକ୍ଷା ଅଧିକ ଏହି ଉପକାର ସାଧିତ ହୁଏ ଯେ ଯେଉଁ ସୌନ୍ଦର୍ଯ୍ୟ ଦ୍ୱାରା ମାନବାତ୍ମା ନିରନ୍ତର ନୂତନ ଜ୍ଞାନଲାଭ୍‌ପାଇଁ ବ୍ୟାକୁଳ, ନବ ନବ ଅନୁଭୂତି ଲାଭପାଇଁ ତୃଷାର୍ତ୍ତ, ସେହି ସୌନ୍ଦର୍ଯ୍ୟ ଆଡ଼କୁ ସେ ନିରନ୍ତର ଆକୃଷ୍ଟ ଏବଂ ଏହି ପ୍ରକାରେ ତାହାର ବାସନା ପରିପୋଷିତ ହୁଏ ।

ଏହାର ସ୍ପଷ୍ଟ ବ୍ୟାବହାରିକ ଅର୍ଥ ଏହି ଯେ, ଗଳ୍ପ କହିବା ପ୍ରଥମତଃ ନାଟ୍ୟଶାଳା ପରି ଚିତ୍ତବିନୋଦନ ରଞ୍ଜନ, ଶ୍ରୋତାର ସୁଖ ସମ୍ପାଦନ ଏହାର ପ୍ରତ୍ୟକ୍ଷ ଉଦ୍ଦେଶ୍ୟ । ତାହାର ସୁଖ, ତାହାର ଶିକ୍ଷା ନୁହେଁ । ସୁଖହିଁ ପ୍ରଥମ, ସୁଖହିଁ ପ୍ରଧାନ । ଅତଏବ ଆଖ୍ୟାନ କଥକ ଯଥାଯୋଗ୍ୟ ସୁଖ ସାଧନକୁ ତାହାଙ୍କର ପଥ ପ୍ରଦର୍ଶକ ସ୍ଥିର କରିବେ । ଏହାର ଉଦ୍‌ବୋଧନ ତାହାଙ୍କର ପ୍ରତ୍ୟକ୍ଷ ଉଦ୍ଦେଶ୍ୟ ହେବ । ଶ୍ରୋତାର ସୁଖ ଲକ୍ଷଣ ପରିଜ୍ଞାନର କଥା ଏହି ଯେ ସେ ସତ୍ୟମୂଳକ ଉପାଖ୍ୟାନ ଶ୍ରବଣରେ କେବେ ବାଳକର ଆନନ୍ଦ ପ୍ରକାଶ ଲକ୍ଷ୍ୟ କରିଅଛନ୍ତି ସେ ସେହି ଲକ୍ଷଣ କେତେବେଳେ ବ୍ୟକ୍ତ ଓ କେତେବେଳେ ଅବ୍ୟକ୍ତ ହୁଏ ତାହା ବୁଝିବାକୁ ଅସମର୍ଥ ନୁହନ୍ତି ।

ଏହି ଆନନ୍ଦ ସହିତ ଘନିଷ୍ଠଭାବରେ ସଂବଦ୍ଧ ଆହୁରି ଦୁଇଗୋଟି ହିତକର ଫଳଲାଭ ଆଖ୍ୟାନକଥକ ଆଶା କରିପାରନ୍ତି ଏବଂ ସେମାନଙ୍କ ମଧ୍ୟରୁ ଅନ୍ତତଃ ଗୋଟିଏ ତାହାଙ୍କର ପୁରସ୍କାର ସ୍ୱରୂପ ହେବ । ପ୍ରଥମଟି ବିଦ୍ୟାଳୟ କକ୍ଷସ୍ଥ ବଦ୍ଧବାୟୁରୁ ଅବ୍ୟାହତି ଲାଭ । ଏହା ଶାନ୍ତି ଓ ସ୍ୱାସ୍ଥ୍ୟପ୍ରଦ ବୋଲି ମୂଲ୍ୟବାନ୍ । ଦ୍ୱିତୀୟ ଫଳ ଏତେ ସୁସ୍ପଷ୍ଟ ନହେଲେ ମଧ୍ୟ ଅଧିକତର ବାଞ୍ଛନୀୟ । ଉପାଖ୍ୟାନ କେତେବେଳେ ଅତି ସହଜ ଏବଂ ଅତି କ୍ଷିପ୍ର କାର୍ଯ୍ୟକର ଉପାୟରେ ଶିକ୍ଷକ ଓ ଛାତ୍ର ମଧ୍ୟରେ ମଧୁର ସମ୍ବନ୍ଧ ଏବଂ ବାଳକର ଦୃଢ଼ ପ୍ରଣିଧାନ ଏକ ଅତି ଶୁଭଙ୍କରୀ ରୀତିରେ ପ୍ରତିଷ୍ଠା କରେ ।

ପାରିପାର୍ଶ୍ୱିକ ଘଟନା ଅଥବା ଅପୂର୍ବ ଅଭ୍ୟାସ ବୈଚିତ୍ର୍ୟରେ ଯେଉଁ ବାଳକମାନଙ୍କର ସ୍ୱାଭାବିକ ଲୋକଭୀରୁତା ବର୍ଦ୍ଧିତ ହୋଇଅଛି ସେମାନଙ୍କ ପକ୍ଷରେ ଏହି ପ୍ରଣିଧାନ ଶକ୍ତି ବିଶେଷ ହିତକର । ଅନ୍ୟାନ୍ୟ ବାଳକମାନଙ୍କଠାରୁ ଏହି ବାଳକମାନେ ଗଳ୍ପ ଶୁଣି ଅତି ସହଜରେ ଏବଂ ସୁବିଧା କ୍ରମେ ଦୃଢ଼ ଅଭିନିବେଶର ଅଭ୍ୟାସ ଲାଭ କରନ୍ତି । ଯେଉଁ ଶିକ୍ଷକଙ୍କୁ ଏହି ଶ୍ରେଣୀର ବାଳକ ନେଇ କାର୍ଯ୍ୟ କରିବାକୁ ହୁଏ, ସେ ଏହି ପ୍ରଧାନ ଓ ଅତ୍ୟାବଶ୍ୟକ କାର୍ଯ୍ୟର କଠିନତା ଏବଂ ତାହା ସମ୍ପାଦନ ପାଇଁ ବ୍ୟାବହାରିକ ସାହାଯ୍ୟର ମୂଲ୍ୟ ବୁଝନ୍ତି । ପ୍ରଥମ ଦୁଇଗୋଟି ଉପକାର ସେମାନଙ୍କର ଲାଭ କରିବାର କ୍ଲେଶକୁ ସମ୍ପୂର୍ଣ୍ଣ ସାର୍ଥକ କରେ । ଶୀଘ୍ର ବାଳକମାନଙ୍କର ପ୍ରୀତିଭାଜନ ହେବାକୁ ହେଲେ ଏବଂ ସେମାନଙ୍କର ପ୍ରଣିଧାନ ଓ ସାନୁରାଗ ମନୋଯୋଗ ଶକ୍ତିର କ୍ରମିକ ବିକାଶ ସାଧନ କରିବାକୁ ଗଲେ ଶିକ୍ଷକ ଅନ୍ତତଃ ଏହି ଦୁଇଗୋଟି ଉପାୟ ଅବଲମ୍ବନ କରିବେ ।

ଗଳ୍ପ କହିବାର ଏହି ଦୁଇଗୋଟି ଉଦ୍ଦେଶ୍ୟ ଛଡ଼ା ଆଉ ଗୋଟିଏ ଉଦ୍ଦେଶ୍ୟ ଅଛି । ଯଥା ଠିକ କରି କଥା କହିବାର ଅଭ୍ୟାସ । ଏହି ଉଦ୍ଦେଶ୍ୟ ହଠାତ୍ ସିଦ୍ଧ ନ ହେଲେ ସୁଦ୍ଧା ଗଳ୍ପ ଯଥାବିଧିରେ କୁହାଗଲେ, ନିଃସନ୍ଦେହରେ ସଫଳ ହୋଇପାରେ । ଏବେ ପ୍ରମାଣିତ ହୋଇଅଛି ଯେ ବିଦ୍ୟାଳୟରେ ଯେଉଁ ବିଷୟଗୁଡ଼ିକ ଶିକ୍ଷା ଦିଆଯାଏ

ସେମାନଙ୍କ ମଧ୍ୟରେ ଗଳ୍ପ କହିବା ଆନନ୍ଦ-ପ୍ରଦାନ ଏବଂ ମନୋଯୋଗ ଦୃଢ଼ୀକରଣର ଶ୍ରେଷ୍ଠ ଉପାୟ । ଆନନ୍ଦ ଓ ମନୋଯୋଗ ଏହି ଦୁଇଟିର ଅଭାବରେ ଶିଶୁ ହୃଦୟରେ କୌଣସି ସଂସ୍କାର ବଦ୍ଧମୂଳ ହୁଏ ନାହିଁ । ଅତଏବ ଆମ୍ଭେ ସରଳ, ହୃଦୟଗ୍ରାହୀ, ବିଶୁଦ୍ଧ ଭାଷାରେ ଗଳ୍ପ କହି ବାଳକର ସାହିତ୍ୟାନୁରାଗ ବର୍ଦ୍ଧନ କରାଇବାର ସୁଯୋଗ ହରାଇବାକୁ ଇଚ୍ଛା କରୁ ନାହିଁ । ଯଦି ଅନୁକରଣ ଦ୍ୱାରା ଭାଷା ଶିକ୍ଷା ହୁଏ ତାହାହେଲେ ଯେଉଁ ଶିକ୍ଷକ ଗଳ୍ପ କହି ବାଳକମାନଙ୍କର ଅତି ଆପଣାର ହୋଇଛନ୍ତି, ସେ ଯଦି ସେ ନିପୁଣ ବିଶୁଦ୍ଧ ଭାଷାରେ ପିଲାଙ୍କ ସହ କଥୋପକଥନ କରନ୍ତି ତେବେ ବାଲ୍ୟକାଳରୁ ବିଶୁଦ୍ଧ ଭାଷାରେ କଥା କହିବାର ଅଭ୍ୟାସ ବଢ଼ିଥାଏ ।

**ଗଳ୍ପର ଲକ୍ଷ୍ୟ**— ଗଳ୍ପ କହିବାର ଆହୁରି ଗୋଟିଏ ଅତି ପ୍ରୟୋଜନୀୟ ଉଦ୍ଦେଶ୍ୟ ଅଛି । ଗଳ୍ପ କହିବା ପିଲାମାନଙ୍କର ମନରେ ଚିନ୍ତା କରିବା ଓ ବାକ୍ୟ କହିବାର ଏକ ନ୍ୟାୟସଙ୍ଗତ ଅଭ୍ୟାସ ସୃଷ୍ଟି କରେ । ଏହା ପ୍ରୟୋଜନୀୟ ଜ୍ଞାନ ଓ ଉପଦେଶର ସୁବିଧାଜନକ ସାଧନ । ଏହା ବାଳକମାନଙ୍କୁ ଭାବ ବ୍ୟକ୍ତ କରିବାର ପ୍ରଣାଳୀ ଶିଖାଏ, ରଚନା ଶିକ୍ଷାରେ ସାହାଯ୍ୟ କରେ ଏବଂ ସେମାନଙ୍କର ଚିନ୍ତାଶକ୍ତିର ପ୍ରସାର ବଢ଼ାଇ ସେମାନଙ୍କର କଳ୍ପନା ଶକ୍ତିର ଉନ୍ମେଷ ସାଧନ କରେ । ସଂକ୍ଷେପରେ କହିବାକୁ ଗଲେ ଏହା ସେମାନଙ୍କର ବୁଦ୍ଧିବୃତ୍ତି ଓ ମନୋବୃତ୍ତିର ଶିକ୍ଷା ସାଧନ କରେ ।

**ଗଳ୍ପର ଆଭିମୁଖ୍ୟ**— ଗଳ୍ପ ଯାହାହେଉ ପଛକେ ଏହା ବାଳକର ଅନୁଭୂତ ଅଥବା କଳ୍ପନାରୁ ଯଥାସମ୍ଭବ ଅଦୂରକୃତ ହେବ । ଏହାର ସତ୍ୟମୂଳକ ଭାବ ଥିବ । ଏହା ପ୍ରେରକ ଏବଂ ଶୃଙ୍ଖଳାବଦ୍ଧ ହେବ । ଏହା ବିରକ୍ତିକର ନ ହୋଇ ଆନନ୍ଦପ୍ରଦ ହେବ । ଏହା ଉପଦେଶ ବ୍ୟାଖ୍ୟା ନ କରି ଉପଦେଶ ପ୍ରଦାନ କରିବ । ସଂକ୍ଷେପରେ, ଏହାର ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ରହିବ । ଏହା ବାଳକର ଚିନ୍ତାଶକ୍ତି ପରିଚାଳିତ ଓ ତାହାର ଅନ୍ତଃକରଣ ଏବଂ ମନୋଭାବର ଶିକ୍ଷା ସମ୍ପାଦନ କରିବ ଏବଂ ତାହା ମନରେ ଶ୍ରେଷ୍ଠ ଭାବ ଶକ୍ତି ଜାଗରଣ ହେବ । ଏହି ଶକ୍ତି

ଆବଶ୍ୟକ ଏବଂ ଅନାବଶ୍ୟକ ବସ୍ତୁମାନଙ୍କର ପ୍ରଭେଦ ନିର୍ଣ୍ଣୟ କରେ । ଯେତେଦୂର ସମ୍ଭବ ଗୋଟିଏ ଗଳ୍ପ ଦ୍ୱାରା ଗୋଟିଏ କିମ୍ବା ଦୁଇଟିରୁ ଅଧିକ ଉଦ୍ଦେଶ୍ୟ ସିଦ୍ଧ ହେବା ଉଚିତ ନୁହେଁ ।

ବାଳକମାନଙ୍କ ପାଇଁ ରଚିତ ଗଳ୍ପରେ କେଉଁସବୁ ବିଶେଷ ଗୁଣ ଥିବା ଉଚିତ ? ଗଳ୍ପର ପ୍ରତ୍ୟେକ କ୍ରମ ଗୋଟିଏ ଗୋଟିଏ ଘଟଣା ହେବ । ଲୋକମାନେ କିପରି ଭାବୁଥିଲେ ତାହା ବ୍ୟାଖ୍ୟା ବର୍ଣ୍ଣନା ଅଥବା କହିବାପାଇଁ ଆଦୌ ସମୟ ନଷ୍ଟ କରିବା ଉଚିତ ନୁହେ । ଲୋକମାନେ କଣ କରୁଥିଲେ ଏବଂ କଣ କହୁଥିଲେ ଗଳ୍ପ ତାହାହିଁ କହିବ । ଘଟଣା ପରମ୍ପରାର ପରସ୍ପର ଘନିଷ୍ଠ ସମ୍ବନ୍ଧ ରହିବ । ସ୍ୱଭାବତଃ ସତ୍ୟ ଘଟଣା ସବୁ ଯେପରି କାଳ ଓ କାରଣର ଅନୁବର୍ତ୍ତୀ ହୁଏ, ଗଳ୍ପରେ ବର୍ଣ୍ଣିତ ଘଟଣାମାନ ମଧ୍ୟ ସେହିପରି କାଳ ଓ କାରଣରେ ଅନୁଯାୟୀ ହେବ । କେଉଁଠାରେ ବ୍ୟବଚ୍ଛେଦ ରହିବ ନାହିଁ । ଉପାଦାନ ସମୂହ ବାଳକମାନଙ୍କର ପରିଚିତ ଅଥବା ପରିଚିତ ସଦୃଶ ବସ୍ତୁଠାରୁ ଅତି ସାମାନ୍ୟ ବିଭିନ୍ନ ହେବ । ଘଟଣାର ଚିତ୍ରଗୁଡ଼ିକ ଏପରି ସନ୍ନିବେଶିତ ହେବ ଯେପରି ସେଗୁଡ଼ିକ ଭିନ୍ନ ଭିନ୍ନ ଅବସ୍ଥାରେ ସଂଘଟିତ ହୋଇ ବାଳକମାନଙ୍କର ଅନ୍ତରରେ ଗଭୀର ଭାବରେ ଅଙ୍କିତ ହେବ ।

ଏହି ପ୍ରକାର ଗଳ୍ପଗୁଡ଼ିକର ଏହି ତିନୋଟି ବିଶେଷ ଗୁଣ ଥିବ । ଯଥା—

(୧) ପରସ୍ପର ଘନିଷ୍ଠଭାବରେ ସମ୍ପୃକ୍ତ ଘଟଣାବଳୀ ।
(୨) ରହସ୍ୟପୂର୍ଣ୍ଣ ପରିଚିତ ଚିତ୍ରର ସମାବେଶ ।
(୩) କିୟଦଂଶର ପୁନରୁକ୍ତି ।

କିପରି ଗଳ୍ପ କହିବାକୁ ହୁଏ ।:—

(୧) ଗଳ୍ପ ଉତ୍ତମରୂପେ ଜାଣିବାକୁ ହେବ । କହିବାବେଳେ ବିଷୟଗୁଡ଼ିକ ଏପରି ସନ୍ନିବେଶିତ ହେବ ଯେପରି ସେଗୁଡ଼ିକ ପ୍ରତ୍ୟେକ ବାସ୍ତବ ହେବ । ଏହାର ମର୍ମ କଥକଙ୍କ ହୃଦୟରେ ଏପରି ସ୍ପଷ୍ଟ ଓ

ଦୃଢ଼ଭାବରେ ନିହିତ ହେବ ଯେପରି ଏହା କହିବାବେଳେ ତାହାଙ୍କୁ ଚିନ୍ତା କରିବାକୁ ହେବ ନାହିଁ ବରଂ ଏହା ସେ ଭିତରୁ କହୁଛନ୍ତି ବୋଲି ଜଣାପଡ଼ିବ ।

ସହଜ ଓ ସରଳଭାବରେ ଏବଂ ପ୍ରୟୋଜନାନୁସାରେ ନାଟକୀୟ ଆକାରରେ ଏହା କହିବାକୁ ହେବ ।

ଭାବ ଓ ଭାଷା ଉତ୍ତମ ଓ ସରଳ ହେବା ଆବଶ୍ୟକ । ପ୍ରଣାଳୀ ଏହି କାର୍ଯ୍ୟରେ ଆପଣାକୁ ଭୁଲିଯିବା ଏହାର ଏକମାତ୍ର ପ୍ରକାର । ଗଳ୍ପର ବିଷୟ ଏପରି ହେବା ଉଚିତ ସ୍ୱୟଂ ତନ୍ମୟ ଭାବରେ ଭାବିବାକୁ ହେବ ଯେପରି ନିଜର କଥା ଭାବିବାକୁ ଅବସର ନ ମିଳେ । ନିଜେ ଏପରି ଭାବରେ ଗଳ୍ପ କହିଲେ ସରଳ ଭାବ ଓ ସରଳ ଭାଷା ସହଜରେ ପ୍ରକାଶ ପାଇବ । ଶିଶୁମାନଙ୍କ ଯଥାର୍ଥ ଅନୁରାଗ ଉତ୍ପାଦନ କରିବାକୁ ହେଲେ ବିଷୟ ଓ କହିବାର ଭାଷା ଉଭୟ ସରଳ ହେବା ଅତ୍ୟାବଶ୍ୟକ । ଗଳ୍ପ କହିବାବେଳେ ଏହା ଦୀର୍ଘ କରିବ ନାହିଁ କି ଏହାକୁ ଅତିରଞ୍ଜିତ କରି କହିବ ନାହିଁ । ବର୍ଣ୍ଣିତ ବିଷୟର ବ୍ୟାଖ୍ୟା ନକରି ଘଟଣାଗୁଡ଼ିକୁ ଗୋଟିଏ ଗୋଟିଏ କରି କହିବାକୁ ହେବ । ବକ୍ତାର ମୁଖଭାବ, ସ୍ୱର ଓ ଶରୀର ବାଳକମାନଙ୍କର ହୃଦୟସ୍ପର୍ଶୀ ହେବା ଆବଶ୍ୟକ ।

ଶିକ୍ଷା ସମ୍ବନ୍ଧୀୟ ଉପଯୋଗିତାବିଶିଷ୍ଟ ହେବାକୁ ହେଲେ ଆଖ୍ୟାନ କହିବା କାର୍ଯ୍ୟ କେବଳ ଶିକ୍ଷକଙ୍କଠାରେ ସୀମାବଦ୍ଧ ନ ହୋଇ ଛାତ୍ର ପର୍ଯ୍ୟନ୍ତ ଅବଶ୍ୟ ବିସ୍ତୃତ ହେବ । ବାଳକମାନେ ଆଗ୍ରହର ସହ ଅଧିକତର ଆନନ୍ଦିତ ମଧ ହେବେ ଓ ଗଳ୍ପ ଶୁଣିବାରେ ମନନିବେଶ କରିବେ ।

କିପରି ଗଳ୍ପ କହିବାକୁ ହୁଏ ।

(କ) ଯାହା କୁହାଯାଇଅଛି ତାହାଠାରୁ ଯେଉଁ ଯେଉଁ ସ୍ଥାନ ଠିକ୍ ପରବର୍ତ୍ତୀ ଅଂଶ ଓ ତାହା ବୁଝାଯାଏ, ଶିକ୍ଷକ ସେହି ସେହି ସ୍ଥାନରେ ରହି ଦେଖିବେ ବାଳକମାନେ ତାହା କହି ପାରୁଅଛନ୍ତି କି ନାହିଁ ।

(ଖ) ସନ୍ଦେହ ସ୍ଥଳ ବିଶେଷରେ ରହି ଶିକ୍ଷକ ବାଳକମାନଙ୍କ ନିକଟରୁ ତାହାର ବ୍ୟାଖ୍ୟା ବୁଝି ଆଦାୟ କରି ଗଳ୍ପର ଅବଶିଷ୍ଟ ଅଂଶ ଶୁଣିବାପାଇଁ ସେମାନଙ୍କର କେତେଦୂର ଅନୁରାଗ ତାହା ପରୀକ୍ଷା କରିବେ ।

(ଗ) ଉପଯୁକ୍ତ ସ୍ଥଳରେ ରହି ବାଳକମାନଙ୍କୁ ସମ୍ବୋଧନ ପୂର୍ବକ ଘଟଣାର ବିଷୟ ଓ ଗଳ୍ପ କଥିତ ବ୍ୟକ୍ତିମାନଙ୍କର ଆଚରଣର କଥା ସେମାନେ କଣ ବୁଝିଲେ ଏବଂ ସେହି ବ୍ୟକ୍ତିମାନଙ୍କର ଅବସ୍ଥାରେ ପଡ଼ିଲେ ସେମାନେ କଣ କରିଥାନ୍ତେ, କାହିଁକି କରିଥାନ୍ତେ ତାହା ପଚାରିବେ ।

(ଘ) ସମ୍ଭବ ହେଲେ ଗଳ୍ପ ମାଧ୍ୟମରେ ପିଲାମାନଙ୍କୁ ବାକ୍ୟଗଠନ କରାଇବାର ଏହାପରେ ଭାବ ଉଦ୍ରେକ କରାଇବେ ।

(ଙ) ଗଳ୍ପ କହିବାର କିଛିଦିନ ପରେ ଶିକ୍ଷକ ବାଳକମାନଙ୍କୁ ଏହି ଗଳ୍ପଟି ପୁନର୍ବାର କହିବାକୁ କହିବେ । ତାହାର ଆଦ୍ୟୋପାନ୍ତ ନ କହି କୌଣସି ନିର୍ଦ୍ଦିଷ୍ଟ ସ୍ଥାନରୁ କୁହାଇବାକୁ ହେବ, କୌଣସି ବିଶିଷ୍ଟ ବାଳକ ସମଗ୍ର ଗଳ୍ପଟି କହିବ ନାହିଁ, ଜଣେ କେତେକ ଅଂଶ କହିଲା ପରେ ପ୍ରତ୍ୟେକ ପରବର୍ତ୍ତୀ ବାଳକ ଯଥାକ୍ରମେ ପରବର୍ତ୍ତୀ ଅଂଶ କହିବ ।

ଗଳ୍ପ ଦ୍ୱାରା ଛାତ୍ରମାନେ ଆନନ୍ଦ ଅନୁଭବ କରିବେ । ଛାତ୍ର ଗୁରୁଙ୍କ ମଧ୍ୟରେ ସମ୍ପର୍କ ରହିବା ପାଠ ଦାନପ୍ରତି ଛାତ୍ରଙ୍କର ଆଗ୍ରହ ସୃଷ୍ଟି, ଶ୍ରେଣୀରେ ଉପସ୍ଥାନ ବୃଦ୍ଧି, ଅନିୟମିତ ଉପସ୍ଥାନ କମିବ । କଥା କହିବାର ଭଙ୍ଗି ବଢ଼ିବ ବା ଶିକ୍ଷାପ୍ରତି ଆକୃଷ୍ଟ ହେବେ ।



# କଥା ନମାନିବାର ଫଳ

ଗୋଟିଏ ଗ୍ରାମରେ ମା ଓ ପୁଅ ଦୁଇଜଣ ରହୁଥିଲେ । ସେହି ମା'ର ପୁଅ (ଟିଙ୍କୁ) ବଡ଼ ଚଗଲ୍ ଥିଲା । ଟିଙ୍କୁ ପାଠ ଜମା ପଢ଼ୁନଥିଲା । ସବୁବେଳେ ବୁଲବୁଲି ଓ ଖେଳକୁଦରେ ସମୟ ନଷ୍ଟ କରୁଥିଲା । ଟିଙ୍କୁ ଅମାନିଆ ଓ ଅଝଟ ପିଲା ଥିଲା । ସେ ଖରା କ'ଣ ବର୍ଷା କ'ଣ କିଛି ନମାନି ସବୁବେଳେ ବୁଲବୁଲି କରୁଥିଲା । ଏପରିକି ଟିଙ୍କୁ ନିଜର ଖାଇବା, ପିଇବା ଓ ପିନ୍ଧିବା ପ୍ରତି ମଧ୍ୟ ଧ୍ୟାନ ଦେଇ ନଥିଲା । ଏହିପରି ସବୁବେଳେ ଟିଙ୍କୁ ନିଜର ଦେହପ୍ରତି ଅଯତ୍ନ ହେବା ଦ୍ୱାରା ଓ ମା'ର କଥା ନମାନି ବୁଲବୁଲି କରିବା ଦ୍ୱାରା ତାକୁ ଥରେ ଭୀଷଣ ଭାବରେ ଜ୍ୱର ହେଲା ।

ଟିଙ୍କୁର ଜ୍ୱର ହେବା ଦ୍ୱାରା ସେ କୁଆଡ଼େ ନଯାଇ ବାରି ଘରେ ଶୋଇଲା ଓ କାନ୍ଦିବାକୁ ଲାଗିଲା । ତାହା ଦେଖି ଟିଙ୍କୁର ମା ବଡ଼ ବ୍ୟସ୍ତ ହୋଇ ଟିଙ୍କୁକୁ ନେଇ ଚିକିତ୍ସାଳୟକୁ ଗଲେ । ଡାକ୍ତର ବାବୁ ଟିଙ୍କୁକୁ ଦେଖି ପରୀକ୍ଷା କରି କହିଲେ ଯେ ନିମୁନିଆ ହୋଇଛି । ବ୍ୟସ୍ତ ହେବାର ନାହିଁ, ସେ ଯଦି ଠିକ୍ ସମୟରେ ଔଷଧ ଖାଇ ବିଶ୍ରାମ ନିଏ ତାହାଲେ ଶୀଘ୍ର ଜ୍ୱର ଭଲ ହୋଇଯିବ । ଏହା କହି ଡାକ୍ତର ବାବୁ ଔଷଧ ଦେଲେ ।

ଟିଙ୍କୁ ଥିଲା ଏକ ଅମାନିଆ ପିଲା । ତେଣୁ ସେ ଡାକ୍ତର ବାବୁଙ୍କ ଔଷଧ ପିତା ଲାଗୁଛି କହି ଖାଇବନି ବୋଲି ମା'କୁ ମନା କରିଦେଲା । ତାପରେ ମା କିଛି ଚିନ୍ତା କରି ଟିଙ୍କୁର ଔଷଧକୁ ଗୋଟିଏ ରସଗୋଲା ଭିତରେ ଭର୍ତ୍ତି କରି ତାକୁ ରସଗୋଲାଟି ଖାଇବାକୁ କହି ଦେଇ ଅନ୍ୟ କାମ କରିବାକୁ ଚାଲିଗଲେ ।

କିଛି ସମୟ ପରେ ଟିଙ୍କୁକୁ ମା ପଚାରିଲେ, ଟିଙ୍କୁ ରସଗୋଲାଟି କେମିତି ଲାଗିଲା । ଟିଙ୍କୁ କହିଲା ମା ରସଗୋଲାଟି ଭାରି ମିଠା ଲାଗିଲା ଖାଇଦେଲି, ତାହାଶୁଣି ମା ଟିକେ ଖୁସି ହେଲାବେଳକୁ ତଳେ ଔଷଧ ପଡ଼ିଥିବା ଦେଖି ପଚାରିଲେ, ଏଇଟା କ'ଣ ପଡ଼ିଛି । ଟିଙ୍କୁ କହିଲା ମା

ରସଗୋଲାର ମଞ୍ଜିଟି ପିତା ଲାଗିଲା ତେଣୁ ଫିଙ୍ଗି ଦେଲା । ତାହାଶୁଣି ମା ରାଗିଗଲେ ଓ ଟିଙ୍କୁକୁ ଦୁଇଟି ଚପେଟିକା (ଗୁପଡ଼ା) ଦେଲେ । ଟିଙ୍କୁର କଥା ନ ମାନିବାର ଫଳ ମିଳିଲା । ତେଣୁ ପିଲାଏ ସବୁବେଳେ ଗୁରୁଜନ ମାନଙ୍କର କଥା ମାନୁଥିବ । ତାଙ୍କର କହିବାନୁସାରେ କାମ କଲେ, ପ୍ରଶଂସାର ପାତ୍ର ହେବା ସଙ୍ଗେ ସଙ୍ଗେ ଦେହ ମଧ୍ୟ ଭଲ ରହିବ ।

✱

# ମୂର୍ଖାମିର ପରିଣତି

ଗୋଟିଏ ନଗର ଥିଲା । ସେହି ନଗରର ଏକ ଛୋଟ ଅଞ୍ଚଳ ଥିଲା । ସେଠାରେ ବହୁତ ଲୋକ ବସବାସ କରୁଥିଲେ । ସେଠାରେ ଗୋଟିଏ ଚୋର ଚୋରିକାମ କରି ଚଳୁଥିଲା । ସେ ବହୁତ ଚତୁର ଥିବାରୁ ତାକୁ କେହି ଧରି ପାରୁ ନଥିଲେ । ଏହାପରି ବହୁତଥର ପ୍ରତ୍ୟେକଙ୍କ ଘରୁ ଚୋରି ହେବାରୁ ପୋଲିସ ଅଫିସର ତାଙ୍କର କର୍ମଚାରୀମାନଙ୍କୁ ସତର୍କ କରାଇ ରାତିରେ ବୁଲିବୁଲି ଗଳି ଗଳିରେ କରିବାକୁ ଆଦେଶ ଦେଲେ । ତାଙ୍କର କର୍ମଚାରୀମାନଙ୍କ ମଧ୍ୟରୁ ମାଧିଆ ନାମଧାରୀ ଗୋଟିଏ ପୋଲିସ ଦିନେ ରାତିରେ ସେହି ଅଞ୍ଚଳରେ ପ୍ରହରୀ ଦେଉଥିଲା । ସେହିଦିନ ଛୀହାନ୍ଧିଆ ବେଳକୁ ଚୋରଟି ଚୋରି କରି ଫେରୁଥିବା ବେଳେ ମାଧିଆ ବାବୁଙ୍କ ହାବୁଡ଼ରେ ପଡ଼ିଲା । ସେ ବାଟରେ ଚୋରକୁ ନେଇ ଥାନାକୁ ଯିବାବେଳେ ବହୁତ ଜୋରରେ ବର୍ଷା ହେଲା । ଦୁଇଜଣଯାକ ଓଦା ହୋଇ ଗଛମୂଳେ ଛିଡ଼ାହୋଇ ବର୍ଷା କମିବାର ଅପେକ୍ଷା କରୁ ଥିବାବେଳେ ଚତୁର ଚୋରଟି କହିଲା, ପୋଲିସବାବୁ ଆପଣ ଓଦା ହୋଇ ଯାଉଛନ୍ତି, ମୋତେ ଭାରି କଷ୍ଟ ଲାଗୁଛି ମୋ ପାଇଁ ଚିନ୍ତା ନାହିଁ ମାତ୍ର ଆପଣ ଓଦା ହେଲେ ଦେହ ଖରାପ ହେବ, ତେଣୁ ଆପଣ ଏଇଠି ଅପେକ୍ଷା କରନ୍ତୁ ମୁଁ ଘରୁ ଛତା ନେଇ ଆସୁଛି । ଏହାଶୁଣି ବୋକା ପୋଲିସ ବାବୁ ଚୋରଟିର ମିଠା କଥାରେ ଭାସିଯାଇ ତାକୁ ଛାଡ଼ିଦେଲେ ଓ ଅପେକ୍ଷା କଲେ ଚୋର ଫେରିବା ପର୍ଯ୍ୟନ୍ତ । ମାତ୍ର ବର୍ଷାଛାଡ଼ି ସଂଧ୍ୟା ହୋଇ ରାତି ହେଲା ପଛେ ଚୋର ଫେରିଲାନି । ଶେଷରେ ସେ ଥାନାକୁ ଫେରି ସବୁକଥା କହିବାରୁ ଅଫିସର ବାବୁ ରାଗି ଗାଳି ଦେଲେ । କହିଲେ ତୁମେ ଚୋରକୁ କଣ ଛାଡ଼ିଥିଲ, ଆଉକେବେ ଏମିତି କାମ କରିବନି କହି ବିରକ୍ତ ହେଲେ ।

ଅଫିସରଙ୍କ ଠାରୁ ଗାଳି ଶୁଣି ମନେ ମନେ ମାଧିଆ ଚୋରକୁ ବହୁତ ଗାଳି ଦେଲା । ତାପରେ ପୁଣି ଅନେକଦିନ ପରେ ସେ

ପୂନର୍ବାର ଚୋରକୁ ଚୋରିକରି ଫେରୁଥିବା ବେଳେ ଧରିଲା ଓ ହାତକଡ଼ା ପକାଇ ମନଖୁସିରେ ଥାନାକୁ ନେଇଯିବା ବାଟରେ ପୂର୍ବଥର ପରି ବହୁତ ଝଡ଼ ତୋଫାନ ଓ ବର୍ଷା ହେଲା । ଫଳରେ ସେ ନଯାଇ ପାରି କହିଲେ, ସେଦିନ ମିନା ତୁ ଛତା ଆଣିବାକୁ ଯାଇ ନଫେରିବାରୁ ମୁଁ ଥାନାବାବୁଙ୍କ ଠାରୁ ଗାଳି ଶୁଣିଲି, ଆଜି ତୁ ଏଇଠି ଅପେକ୍ଷା କରି ମୁଁ ଛତା ଆଣିବାକୁ ଯାଉଛି । ଏହା କହି ପୋଲିସ (ମାଧିଆ) ବାବୁ ଛତା ପାଇଁ ଗଲାବେଳେ ଚୋର ପଳେଇଗଲା । ସେ ଛତା ନେଇ ଫେରିଲାବେଳକୁ ଚୋର ନଥିଲା, ଏହି କଥା ଯାଇ ଅଫିସରଙ୍କୁ କହିବାରୁ ସେ ରାଗିଗଲେ ଓ ବୋକା ପୋଲିସକୁ ସସ୍‌ପେଣ୍ଡ୍ କରିଦେଲେ । ମାଧିଆକୁ ତାର ମୂର୍ଖାମିର ଫଳ ମିଳିଲା । ସେ କାମ କରିବା ପୂର୍ବରୁ ଠିକ୍ ଭୁଲ୍ ବିଚାର ନକରି ହଠାତ କରିଦେଉ ଥିବାରୁ ତା'ର ଚାକିରି ଗଲା । ତେଣୁ ସବୁକାମ କରିବା ପୂର୍ବରୁ ନିଜର ବୁଦ୍ଧି ଦ୍ୱାରା ଚିନ୍ତା କରି କାହାକଥା ନଶୁଣି କାମ କରିବା ଉଚିତ୍ ।



# ଗୁରୁଙ୍କ ଉତ୍ତର

ଘଉଚର ଗୋଟିଏ ବିଶାଳ ନଗରୀ ଭାବରେ କଲିକତା ଶର ପରିଚିତ । ସେହି ବିଶାଳମୟୀ ନଗରୀ କଲିକତାରେ ରହୁଥିଲେ ଜଣେ ବିଦ୍ୱାନ୍ ଗୁରୁ । ତାଙ୍କର ନାମ ଥିଲା ରାମକୃଷ୍ଣ ପରମହଂସ । ସେ ସାଧୁ ପ୍ରକୃତିର ଲୋକ ଥିଲେ । ସେହି ଗୁରୁଙ୍କର ଅନେକ ଶିଷ୍ୟ ଥିଲେ ।

ଏକଦା ଜଣେ ଶିଷ୍ୟ ଗୁରୁଙ୍କୁ ତଥା ଗୁରୁଶିଷ୍ୟମାନଙ୍କୁ ନିଜ ଘରକୁ ଭୋଜନ ପାଇଁ ନିମନ୍ତ୍ରିତ କଲା । ଶିଷ୍ୟଟି ତା'ର ଘରେ ସେମାନଙ୍କ ଖାଇବା ପାଇଁ ବଢିଆ ବଢିଆ ଖାଦ୍ୟ ରାନ୍ଧିଥିଲା । ପୁରୀ, ସୁସ୍ୱାଦୁ ତରକାରୀ, ଖିରି, ମିଠାଅନ୍ନ, ଖଟା ଇତ୍ୟାଦି ଇତ୍ୟାଦି । ଯଥା ସମୟରେ ଗୁରୁ ଓ ଗୁରୁଶିଷ୍ୟ ଖାଇବା ପାଇଁ ପହଞ୍ଚିଲେ । ସମସ୍ତେ ଖାଇ ବସିଲେ । ସମସ୍ତେ ଆନନ୍ଦରେ ଭୋଜନ କରୁଥିବା ସମୟରେ ମଧ୍ୟେ ମଧ୍ୟେ ଶିଷ୍ୟଟି ଗୁରୁଙ୍କୁ ଓ ଅନ୍ୟମାନଙ୍କୁ କ'ଣ ଆବଶ୍ୟକ ବୃଝି ପରଶୁଥାଏ । ଗୁରୁଙ୍କ ପାଖକୁ ଯାଇ ଶିଷ୍ୟଟି ବାରମ୍ବାର ଆଉ ନିଅନ୍ତୁ, ଆଉ ନିଅନ୍ତୁ କହି ଅନ୍ନବ୍ୟଞ୍ଜନ ଦେଉଥାଏ । ଶେଷରେ ଗୁରୁ କହିଲେ ହେ ଶିଷ୍ୟ ! ମୁଁ ନାସିକା ପର୍ଯ୍ୟନ୍ତ ଖାଇ ସାରିଲିଣି, ଆଉ ଖାଇ ପାରିବି ନାହିଁ । ବର୍ତ୍ତମାନ ମୋ ପେଟ ଭିତରକୁ ଲବଙ୍ଗଟିଏ ଯିବାକୁ ମଧ୍ୟ ସ୍ଥାନ ନାହିଁ । ତେଣୁ ଆଉ କ'ଣ ଖାଇବି କହି ନିଜ ସ୍ଥାନରୁ ଉଠି ହାତ ଧୋଇଲେ ଏବଂ ଗୁରୁ ଶିଷ୍ୟମାନେ ମଧ୍ୟ ହାତ ଧୋଇ ସମସ୍ତେ ମିଠା ପାନ ଗୋଟିଏ ଗୋଟିଏ ଖାଇ ଗଲାବେଳେ ବାଟରେ ରନ୍ଧନ ଶାଳାଟି ପଡ଼ିଲା ।

ରନ୍ଧନ ଶାଳାରେ ଗୁରୁ ଦେଖିଲେ, ବଡ଼ ବଡ଼ ରସଗୋଲାମାନ ଥୁଆ ହୋଇଛି । ରାମକୃଷ୍ଣ ପରମହଂସ ଟିକିଏ ମିଷ୍ଟାନ୍ନପ୍ରେମୀ ଥିଲେ । ରସଗୋଲା ଦେଖି ତାଙ୍କ ପାଟିରୁ ଲାଳ ବାହାରିଲା । ସେ କହିଲେ, ହେ ଶିଷ୍ୟ ! ତୁମେ ଆମକୁ କାହିଁକି ରସଗୋଲା ଦେଲନାହିଁ କହି ଚରକି ହେଲେ । ଶିଷ୍ୟ କହିଲା

ଗୁରୁଦେବ ! ଖାଇସାରିବା ପରେ ମୁଁ ରସଗୋଲା ଦେଇଥାନ୍ତି ମାତ୍ର ଆପଣ କଷ୍ଟ ସ୍ୱୀକାର [illegible] ଅନ୍ୟ [illegible] କରି ଉଠି ପଡ଼ିଲେ, ତେଣୁ ଦେଲିନାହିଁ । ବର୍ତ୍ତମାନ ନଅଣ୍ଟି କହି ଶିଷ୍ୟ ବସିଥାନ୍ତି ଓ ଗୁରୁ ଖାଉଥାନ୍ତି । ଏହିପରି ଭାବରେ ଗୁରୁ ୨୫ଟି ରସଗୋଲା ଆନନ୍ଦରେ ଭକ୍ଷଣ କଲେ । ତାହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହେଲେ ମାତ୍ର ଜଣେ ଶିଷ୍ୟ ଜୋରରେ ହସି ଦେଲେ । ତାଙ୍କୁ ଦେଖି ଗୁରୁ ଶିଷ୍ୟଙ୍କୁ ହସିବାର କାରଣ ପଚାରିଲେ । ଶିଷ୍ୟ କହିଲେ ଆପଣ କହୁଥିଲେ ଆପଣଙ୍କ ପେଟ ଭିତରକୁ ଲବଙ୍ଗ ଯିବାକୁ ମଧ୍ୟ ବାଟ ନାହିଁ । ଲବଙ୍ଗଟି ଏତେ ଛୋଟ ମାତ୍ର ଏତେ ବଡ଼ ବଡ଼ ୨୫ଟି ରସଗୋଲା କିପରି ଗଲା । ତାହା ଶୁଣି ଗୁରୁ କହିଲେ ।-

ଗୋଟିଏ କଥା ଶୁଣ । କଲିକତା ନଗରୀ ଏକ ବିଶାଳ ନଗରୀ । ସକାଳେ ୧୦ଟା ସମୟରେ ଜନଗହଳି ଏପରି ହୋଇଥାଏ ଯେ ରାସ୍ତାରେ ଗୋଟିଏ ସାଇକେଲ ଯାନ ଯିବା ମଧ୍ୟ ବହୁତ କଷ୍ଟ ହୁଏ ମାତ୍ର ଯଦି ଠିକ୍ ସେହି ସମୟରେ ରାଜ୍ୟପାଳଙ୍କ ମୋଟରଯାନ ସେଠାରେ ପହଞ୍ଚିଯାଏ । ଯାହା ହେଲେ ରାସ୍ତା ପରିଷ୍କାର ହୋଇଯାଏ ଓ ରାଜ୍ୟପାଳଙ୍କ ମୋଟର ଅତି ଖୁସିରେ ଚାଲିଯାଏ । ଠିକ୍ ସେହିପରି ମୋର ପେଟକୁ ରସଗୋଲା ଆନନ୍ଦରେ ଚାଲିଯାଇଥିଲା । ତେଣୁ ହସିବାର କୌଣସି କାରଣ ନାହିଁ । ଗୁରୁଙ୍କ ଉତ୍ତର ଶୁଣି ସମସ୍ତ ଶିଷ୍ୟ ଆଶ୍ଚର୍ଯ୍ୟରେ ତାଙ୍କ ମୁହଁକୁ ଚାହିଁଲେ ।



# ଜାଣିବା କଥା

## ଭାରତରେ

| | | |
|---|---|---|
| ଜାତିର ପିତା | - | ମହାତ୍ମାଗାନ୍ଧୀ |
| ନେତାଜୀ | - | ସୁଭାଷଚନ୍ଦ୍ର ବୋଷ |
| ଦେଶବନ୍ଧୁ | - | ଚିତ୍ତରଞ୍ଜନ ଦାସ |
| ଗୁରୁଦେବ ବିଶ୍ୱକବି | - | ରବୀନ୍ଦ୍ରନାଥ ଠାକୁର |
| ସ୍ୱାମିଜୀ | - | ବିବେକାନନ୍ଦ |
| ଲୋକମାନ୍ୟ | - | ବାଳ ଗଙ୍ଗାଧର ତିଲକ |
| ପଞ୍ଜାବ କେଶରୀ | - | ଲାଲା ଲଜପତ ରାୟ |
| ଲୌହମାନବ | - | ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ |
| ଲୋକନାୟକ | - | ଜୟପ୍ରକାଶ ନାରାୟଣ |
| ଗୁରୁଜୀ | - | ପଣ୍ଡିତ ଜବାହରଲାଲ ନେହେରୁ |
| ଆନ୍ଧ୍ର କେଶରୀ | - | ଟି. ପ୍ରକାଶମ୍ |
| ମହାମାନ୍ୟ | - | ମଦନମୋହନ ମାଲବ୍ୟ |
| ଜଗତଗୁରୁ | - | ଶଙ୍କରାଚାର୍ଯ୍ୟ |

## ଓଡ଼ିଶାରେ ବିଶିଷ୍ଟ ବ୍ୟକ୍ତି ଓ କବି

| | | |
|---|---|---|
| ବାଣୀକଣ୍ଠ | - | ନିମାଇଁ ଚରଣ ହରିଚନ୍ଦନ |
| ବ୍ୟାସକବି | - | ଫକୀର ମୋହନ ସେନାପତି |
| କବିବର | - | ରାଧାନାଥ |
| କବିସୂର୍ଯ୍ୟ | - | ବଳଦେବ ରଥ |
| କାନ୍ତକବି | - | ଲକ୍ଷ୍ମୀକାନ୍ତ ମହାପାତ୍ର |
| କବିଚନ୍ଦ୍ର | - | କାଳନ୍ଦୀ ଚରଣ ପଟ୍ଟନାୟକ |
| ଜାତୀୟ କବି | - | ବୀରକିଶୋର |
| କବିସମ୍ରାଟ | - | ଉପେନ୍ଦ୍ର ଭଞ୍ଜ |
| ସନ୍ଥକବି | | ଭୀମଭୋଇ |

| | | |
|---|---|---|
| ଗଣକବି | - | ବୈଷ୍ଣବ ପାଣି |
| ପ୍ରକୃତି କବି | - | ଗଙ୍ଗାଧର ମେହେର |
| ପଲ୍ଲୀକବି | - | ନନ୍ଦକିଶୋର |
| ଲୋକରତ୍ନ | - | ଡଃ କୁଞ୍ଜବିହାରୀ ଦାଶ |
| କବି ଶେଖର | - | ଚିନ୍ତାମଣି ମହାନ୍ତି |
| କବିବର | - | ରାଧାନାଥ ରାୟ |
| ଶୂଦ୍ରମୁନି | - | ସାରଳା ଦାସ |
| ଉତ୍କଳ ମଣି | - | ଗୋପବନ୍ଧୁ ଦାଶ |
| ପଠାଣୀସାମନ୍ତ | - | ସାମନ୍ତ ଚନ୍ଦ୍ରଶେଖର ସିଂହ |
| ଉତ୍କଳ ଗୌରବ | - | ମଧୁସୂଦନ ଦାସ |
| ଅତିବଡ଼ି | - | ଜଗନ୍ନାଥ ଦାସ |
| କର୍ମବୀର | | ଗୌରୀଶଙ୍କର ରାୟ |
| ଉତ୍କଳ କେଶରୀ | - | ହରେକୃଷ୍ଣ ମହତାବ |
| ଭୂମିପୁତ୍ର | - | ବିଜୟାନନ୍ଦ ପଟ୍ଟନାୟକ (ବିଜୁ) |
| ଉତ୍କଳ ଭାରତୀ | - | କୁନ୍ତଳା କୁମାରୀ ସାବତ |
| ଉତ୍କଳ ଘଣ୍ଟ | - | ଯଦୁମଣି ମହାପାତ୍ର |
| ଉତ୍କଳ ରତ୍ନ | - | ବିଶ୍ୱନାଥ ମିଶ୍ର |
| ଭକ୍ତକବି | - | ମଧୁସୂଦନ ରାଓ |
| ବରପୁତ୍ର | - | ନୀଳକଣ୍ଠ ଦାଶ |

ପଞ୍ଚସଖା— ଶ୍ରୀ ଗୋପବନ୍ଧୁ ଦାଶ, ଶ୍ରୀ ନୀଳକଣ୍ଠ ଦାଶ, ଆଚାର୍ଯ୍ୟ ହରିହର ଦାଶ, ଶ୍ରୀ ଗୋଦାବରୀଶ ମିଶ୍ର, ଶ୍ରୀ କୃପାସିନ୍ଧୁ ମିଶ୍ର ।

## ପୃଥିବୀର ବିଭିନ୍ନ ଦେଶର ଜାତୀୟ ସଂକେତ

| ଦେଶ | ସଂକେତ |
|---|---|
| ଭାରତ | ଅଶୋକ ଚକ୍ର |
| ଫ୍ରାନସ | କଇଁଫୁଲ |
| ଅଷ୍ଟ୍ରେଲିଆ | କଙ୍ଗାରୁ |
| ଇରାନ୍ | ଗୋଲାପ |
| ଜାପାନ୍ | କ୍ରିସେମସ୍ |
| ଚୀନ୍ | ନାର୍ସିସସ୍ (ଏକ ଫୁଲ ଗଛ) |
| ଯୁ. ଆମେରିକା | ଥିସଲ୍ (ଏକ ପ୍ରକାର କଣ୍ଟାଗଛ) |
| ଇଂଲଣ୍ଡ | ଗୋଲାପ |
| ପାକିସ୍ଥାନ | ଅର୍ଦ୍ଧଚନ୍ଦ୍ର |
| ଇଟାଲି | ଶ୍ୱେତ କଇଁ |
| ଜର୍ମାନୀ | ଗହମ ଫୁଲ |
| ଡେନମାର୍କ | ସମୁଦ୍ରତଟ ଜାହାଜ |
| ସ୍ପେନ୍ | ଇଗଲ୍ |
| ମିଶର | ପଦ୍ମ |

## ବିଭିନ୍ନ ଧର୍ମ ଓ ତାଙ୍କର ପ୍ରବର୍ତ୍ତକ

| ଧର୍ମ | ପ୍ରବର୍ତ୍ତକ |
|---|---|
| ଜୈନଧର୍ମ | ମହାବୀର ଜିନ |
| ବୌଦ୍ଧଧର୍ମ | ଗୌତମ ବୁଦ୍ଧ |
| ଖ୍ରୀଷ୍ଟଧର୍ମ | ଯୀଶୁଖ୍ରୀଷ୍ଟ |
| ଇସଲାମ ଧର୍ମ | ମହମ୍ମଦ |
| କନ୍‌ଫୁସିୟସ୍ ଧର୍ମ | କନ୍‌ଫୁସିୟସ୍ |
| [redacted] | [redacted] |
| ସିଣ୍ଟୋ ଧର୍ମ | ସିକାଡ଼ୋ |

| ଧର୍ମ | ପ୍ରବର୍ତ୍ତକ |
|---|---|
| ଶିଖ ଧର୍ମ | ଗୁରୁ ନାନକ |
| ତାଓ ଧର୍ମ | ଲଓତ୍ସେ |
| ବୈଷ୍ଣବ ଧର୍ମ | ଶ୍ରୀ ଚୈତନ୍ୟ |
| ମହିମା ଧର୍ମ | ମହିମା ସ୍ୱାମୀ |

## ବିଭିନ୍ନ ଦେଶର ପ୍ରଚଳିତ ମୁଦ୍ରା

| ଦେଶ | ପ୍ରଚଳିତ ମୁଦ୍ରା | ଦେଶ | ପ୍ରଚଳିତ ମୁଦ୍ରା |
|---|---|---|---|
| ଭାରତ | ଟଙ୍କା | କାନାଡ଼ା | ଡଲାର |
| ନେପାଳ | ଟଙ୍କା | ଇଥିଓପିଆ | ଡଲାର |
| ଭୁଟାନ୍ | ଟଙ୍କା | ନିଉଜିଲାଣ୍ଡ | ଡଲାର |
| ଶ୍ରୀଲଙ୍କା | ରୁପି | ମାଲେସିଆ | ଡଲାର |
| ପାକିସ୍ତାନ | ରୁପି | ଅଷ୍ଟ୍ରେଲିଆ | ଡଲାର |
| ଲିବିଆ | ପାଉଣ୍ଡ | ଇଣ୍ଡୋନେସିଆ | ରୁପିଆ |
| ଆରବ | ପାଉଣ୍ଡ | ବାଂଲାଦେଶ | ଟାକା |
| ସାଇପ୍ରସ୍ | ପାଉଣ୍ଡ | ଚୀନ୍ | ୟୁଆଁ |
| ଇସ୍ରାଏଲ୍ | ପାଉଣ୍ଡ | ଇଟାଲି | ଲିରା |
| ଇଂଲଣ୍ଡ | ପାଉଣ୍ଡ | ଜାପାନ | ୟେନ୍ |

## ଭାରତରେ ରାଜ୍ୟ ଓ ରାଜଧାନୀ

| ରାଜ୍ୟ | ରାଜଧାନୀ | ରାଜ୍ୟ | ରାଜଧାନୀ |
|---|---|---|---|
| ଆନ୍ଧ୍ରପ୍ରଦେଶ | - ହାଇଦ୍ରାବାଦ | ହିମାଚଳପ୍ରଦେଶ | - ସିମଲା |
| ଆସାମ | - ଦିସପୁର | ଜାମ୍ମୁ ଓ କାଶ୍ମୀର | - ଶ୍ରୀନଗର |
| ବିହାର | - ପାଟନା | କର୍ଣ୍ଣାଟକ | - ବାଙ୍ଗାଲୋର |
| ଗୁଜୁରାଟ | - ଗାନ୍ଧୀନଗର | କେରଳ | - ତ୍ରିଭେନ୍ଦ୍ରମ |
| ଓଡ଼ିଶା | - ଭୁବନେଶ୍ୱର | ମଧ୍ୟପ୍ରଦେଶ | - ଭୋପାଳ |
| ହରିଆନା | - ଚଣ୍ଡିଗଡ଼ | ତାମିଲନାଡୁ | - ମାଦ୍ରାଜ |

| ରାଜ୍ୟ | ରାଜଧାନୀ | ରାଜ୍ୟ | ରାଜଧାନୀ |
|---|---|---|---|
| ପଞ୍ଜାବ | - ଚଣ୍ଡିଗଡ଼ | ତ୍ରିପୁରା | - ଅଗରତାଲ୍ |
| ପଶ୍ଚିମବଙ୍ଗ | - କଲିକତା | ମଣିପୁର | - ଇମ୍ଫାଲ |
| ଉତ୍ତର ପ୍ରଦେଶ | - ଲକ୍ଷ୍ନୌ | ମେଘାଳୟ | - ସିଲଂ |
| ମହାରାଷ୍ଟ୍ର | - ବମ୍ବେ | ରାଜସ୍ଥାନ | - ଜୟପୁର |
| ନାଗାଲାଣ୍ଡ | - କୋହିମା | ମିଜୋରାମ | - ଆଇଜଲ |
| ସିକିମ୍ | - ଗାଙ୍ଗଟକ | ଅରୁଣାଚଳପ୍ରଦେଶ | - ଇଟାନଗର |

## କେନ୍ଦ୍ରଶାସିତ ଅଞ୍ଚଳ

ଦିଲ୍ଲୀ - ନୂଆଦିଲ୍ଲୀ
ଦାଦ୍ରାନଗରହାବେଲୀ - ଶିଲଭାସ
ଚଣ୍ଡିଗଡ - ଚଣ୍ଡିଗଡ଼
ପଣ୍ଡିଚେରୀ - ପଣ୍ଡିଚେରୀ
ଗୋଆ, ଡାମନ, ଡିଉ - ପାନାଜୀ
ଲକ୍ଷାଦ୍ୱୀପ - କୋଜିକୋଡ଼
ଆଣ୍ଡାମାନନିକୋବର - ପୋର୍ଟବ୍ଲୁଏର

## ଭାରତର ରାଷ୍ଟ୍ରପତି

ପ୍ରଥମ - ଡକ୍ଟର ରାଜେନ୍ଦ୍ର ପ୍ରସାଦ
୨ୟ - ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ
୩ୟ - ଡକ୍ଟର ଜାକିର ହୁସେନ୍
୪ର୍ଥ - ଶ୍ରୀ ଭି. ଭି. ଗିରି
୫ମ - ଶ୍ରୀ ଫକ୍ରୁଦ୍ଦୀନ ଅଲ୍ଲି ମହମ୍ମଦ୍
୬ଷ୍ଠ - ଶ୍ରୀ ନୀଲମ ସଂଜୀବ ରେଡ୍ଡି
୭ମ - ଜୈଲ ସିଂ
୮ମ - ଶ୍ରୀରାମ ସ୍ୱାମୀ ଭେଙ୍କଟରମଣ
୯ମ - ଶଙ୍କର ଦୟାଲ ଶର୍ମା

## ଭାରତର ପ୍ରଧାନମନ୍ତ୍ରୀ

ପ୍ରଥମ - ପଣ୍ଡିତ୍ ଜବାହାରଲାଲ ନେହରୁ
୨ୟ - ଶ୍ରୀ ଲାଲବାହାଦୁର ଶାସ୍ତ୍ରୀ
୩ୟ - ଶ୍ରୀମତୀ ଇନ୍ଦିରା ଗାନ୍ଧୀ
୪ର୍ଥ - ଶ୍ରୀ ମୋରାରଜୀ ଦେଶାଇ
୫ମ - ଚୌଧୁରୀ ଚରଣ ସିଂହ
୬ଷ୍ଠ - ଶ୍ରୀମତୀ ଇନ୍ଦିରା ଗାନ୍ଧୀ
୭ମ - ଶ୍ରୀ ରାଜୀବ ଗାନ୍ଧୀ
୮ମ - ଶ୍ରୀ ବିଶ୍ୱନାଥ ପ୍ରତାପ ସିଂହ
୯ମ - ଶ୍ରୀ ଚନ୍ଦ୍ରଶେଖର
୧୦ମ - ନରସିଂହ ରାଓ

## ଓଡ଼ିଶାର ରାଜ୍ୟପାଳଗଣ

୧ । ଡକ୍ଟର କୈଳାସନାଥ କାଟଜୁ (୧୯୪୭)
୨ । ଶ୍ରୀ ଅସଫ୍ ଅଲ୍ଲୀ (୧୯୪୮)
୩ । ଶ୍ରୀ ଭି. ପି. ମେନନ୍ (ଅସ୍ଥାୟୀ ୧୯୫୨)
୪ । ସାର ସୟଦ ଫଜଲ ଅଲ୍ଲୀ (୧୯୫୨)
୫ । ଶ୍ରୀ ସୂର୍ଯ୍ୟପ୍ରତାପ ସଞ୍ଜିବମ୍ କୁମାର ସ୍ୱାମୀ ରାଜା (୧୯୫୪)
୬ । ଶ୍ରୀ ଭୀମସେନ୍ ସାଚ୍ଚର (୧୯୫୬)
୭ । ଶ୍ରୀ ଯଶୋବନ୍ତ ନାରାୟଣ ସୁକୁଠଣକର (୧୯୬୨)
୮ । ଡ଼କ୍ଟର ଅଯୋଧ୍ୟାନାଥ ଖୋସଲା (୧୯୬୨)
୯ । ଖଲିଲ ମହମ୍ମଦ (ଅସ୍ଥାୟୀ ୧୯୬୬)
୧୦ । ଡ଼କ୍ଟର ସୌକତ ଅଲ୍ଲୀଖାଁ ଆନସାରୀ (୧୯୬୮)
୧୧ । ସର୍ଦ୍ଦାର ଯୋଗୀନ୍ଦ୍ର ସିଂହ (୧୯୭୧)
୧୨ । ଶ୍ରୀ ଗତିକୃଷ୍ଣ ମିଶ୍ର (ଅସ୍ଥାୟୀ ୧୯୭୨)
୧୩ । ଶ୍ରୀ ବାସପା ଦାନ୍ପାଜରି (୧୯୭୨)
୧୪ । ଶ୍ରୀ ଗତିକୃଷ୍ଣ ମିଶ୍ର (୧୯୭୪)
୧୫ । ଆକବର ଅଲ୍ଲୀଖାଁ (୧୯୭୪)

୧୬ । ଶ୍ରୀଶିବନାରାୟଣ ଶଙ୍କର (ଅସ୍ଥାୟୀ-୧୯୭୬)
୧୭ । ଶ୍ରୀ ହରଚରଣ ସିଂହଦ୍ୱାର (୧୯୭୭)
୧୮ । ଶ୍ରୀ ଭଗବତ ଦୟାଲଶର୍ମା (୧୯୭୭)
୧୯ । ଶ୍ରୀ ସି. ଏମ. ପୁନାଚ୍ଚ (୧୯୮୦)
୨୦ । ଶ୍ରୀ ବିଶ୍ୱମ୍ଭରନାଥ ପାଣ୍ଡେ (୧୯୮୪)
୨୧ । ପ୍ରଫେସର ନୁରୁଲହାସନ (୧୯୮୯)
୨୨ । ଶ୍ରୀ ଯଜ୍ଞଦତ୍ତ ଶର୍ମା (ବର୍ତ୍ତମାନ ଅଛନ୍ତି)

## ଓଡ଼ିଶାର ମୁଖ୍ୟମନ୍ତ୍ରୀଗଣ

୧ । ଡ଼କ୍ଟର ହରେକୃଷ୍ଣ ମହତାବ (୧୯୪୭-୫୦)
୨ । ଶ୍ରୀ ନବକୃଷ୍ଣ ଚୌଧୁରୀ (୧୯୫୦-୫୬)
୩ । ଡ଼କ୍ଟର ହରେକୃଷ୍ଣ ମହତାବ (୧୯୫୬-୬୧)
୪ । ବିଜୟାନନ୍ଦ ପଟ୍ଟନାୟକ (୧୯୬୧-୬୩)
୫ । ଶ୍ରୀ ବିରେନ ମିତ୍ର (୧୯୬୩-୬୫)
୬ । ଶ୍ରୀ ସଦାଶିବ ତ୍ରିପାଠୀ (୧୯୬୫-୬୭)
୭ । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ (୧୯୬୭-୭୧)
୮ । ଶ୍ରୀ ବିଶ୍ୱନାଥ ଦାସ (୧୯୭୧-୭୨)
୯ । ଶ୍ରୀମତୀ ନନ୍ଦିନୀ ଶତପଥୀ (୧୯୭୨-୭୬)
୧୦ । ଶ୍ରୀ ବିନାୟକ ଆଚାର୍ଯ୍ୟ (୧୯୭୬-୭୭)
୧୧ । ଶ୍ରୀ ନୀଳମଣି ରାଉତରାୟ (୧୯୭୭-୮୦)
୧୨ । ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ (୧୯୮୦-୮୯)
୧୩ । ଶ୍ରୀ ହେମାନନ୍ଦ ବିଶ୍ୱାଳ (ଅସ୍ଥାୟୀ)
୧୪ । ଶ୍ରୀ ବିଜୟାନନ୍ଦ ପଟ୍ଟନାୟକ (୧୯୯୦ ଠାରୁ ବର୍ତ୍ତମାନ ଅଛନ୍ତି)

## ଭାରତର ବୃହତ୍ତମ

| | | |
|---|---|---|
| ବୃହତ୍ତମ ହ୍ରଦ | - | ଉଲାର (କାଶ୍ମୀର) |
| ,, ମରୁଭୂମି | - | ଥର୍ |

| | |
|---|---|
| ବୃହତ୍ତମ ମସ୍‌ଜିଦ୍ | ଯୁମାମସ୍‌ଜିଦ୍ (ଦିଲ୍ଲୀ) |
| ,, ଚିଡ଼ିଆଖାନା | କଲିକତା |
| ,, ସହର | କଲିକତା |
| ,, କୋଇଲାଖଣି | ଗଣ୍ଡୱାନା |
| ଉଚ୍ଚତମ ଜଳପ୍ରପାତ | ଜେରସୋପା (ମହୀଶୂର) |
| ,, ବନ୍ଧ | ଭାକ୍ରା ବନ୍ଧ (ପଞ୍ଜାବ) |
| ଦୀର୍ଘତମ ନଦୀ | ଗଙ୍ଗା |
| ,, ପ୍ଲାଟଫର୍ମ | ସୋନପୁର |
| ,, ରାସ୍ତା | ଗ୍ରାଣ୍ଡଟ୍ରଙ୍କ ରୋଡ୍ |
| ବୃହତ୍ତମ ପ୍ରଦେଶ | ମଧ୍ୟପ୍ରଦେଶ (ଆୟତନ) |
| ,, ପ୍ରଦେଶ | ଉତ୍ତର ପ୍ରଦେଶ (ଲୋକସଂଖ୍ୟା) |
| ,, ଦୁର୍ଗ | ଆଗ୍ରାଦୁର୍ଗ |
| ଉଚ୍ଚତମ ଗିରିଶୃଙ୍ଗ | ଏଭେରେଷ୍ଟ |
| ,, ଦେବମନ୍ଦିର | ଦକ୍ଷିଣର ମିନାକ୍ଷୀ ମନ୍ଦିର |
| ବୃହତ୍ତମ ଗମ୍ବୁଜ | ଗୋଲ ଗମ୍ବୁଜ (ବିଜାପୁର) |
| ଉଚ୍ଚତମ ସ୍ତମ୍ଭ | କୁତବମିନାର |
| ସର୍ବୋଚ୍ଚ ପୁରସ୍କାର | ଭାରତ ରତ୍ନ |
| ବୃହତ୍ତମ ଗୁମ୍ଫା ମନ୍ଦିର | ଏଲୋରା |
| ,, ଲବଣ ଜଳହ୍ରଦ | ଚିଲିକା (ଓଡ଼ିଶା) |
| ,, ମାଟିବନ୍ଧ | ଚିସକୋଣ୍ଡା |
| ଦୀର୍ଘତମ ଭାସମାନ ପୋଲ | ହାଓଡ଼ାପୋଲ |
| ବୃହତ୍ତମ ବିଶ୍ୱବିଦ୍ୟାଳୟ | କଲିକତା |
| ,, ଆଲୁମିନିୟମ୍ କାରଖାନା | ଦାମନଯୋଡ଼ (କୋରାପୁଟ) |
| ,, ସୁନାଖଣି | କୋଲାର (ମହୀଶୂର) |
| ଦୀର୍ଘତମ ବନ୍ଧ | ହୀରାକୁଦ (ଓଡ଼ିଶା) |
| ଉଚ୍ଚତମ ଦ୍ୱାର | ବୁଲନ୍ଦ ଦରୱାଜା |
| ,, ଝରଣା | ଜାଗ |
| ,, ପୋଲ | ଚମ୍ବଲ ପୋଲ |

# ଗରିବର ବନ୍ଧୁ

କୌଣସି ଏକ ଗ୍ରାମରେ କିଶୋର ଏବଂ ତା'ର ମା ରହୁଥାନ୍ତି । ସେମାନେ ଥିଲେ ବହୁତ ଗରିବ । ଗରିବ ହେଲେ ବି ପ୍ରକୃତିରେ ସେ ଦୁହେଁ ଥିଲେ ବହୁତ ଭଲ । ଗରିବ ହୋଇଥିବାରୁ କିଶୋର ପାଠ ପଢିବାକୁ ଭଲ ବହି ଓ ଖାତା ପାଉନଥିଲା । କଥାରେ ଅଛି-ଇଚ୍ଛା ଥିଲେ ଉପାୟ ଅଛି । କିଶୋର ତା'ର ସାଙ୍ଗମାନଙ୍କଠାରୁ ଗଣିତ ବହି, ମୋ ପାଠ ବହି ପ୍ରଭୃତି ମାଗି ପଢ଼ାପଢ଼ି କରୁଥାଏ । ସେହିବର୍ଷ ତା'ର ମା ଗାଁ ପାଖ ପ୍ରାଥମିକ ବିଦ୍ୟାଳୟରେ ତା'ର ନାମ ଲେଖେଇ ଦେଲେ ।

ବିଦ୍ୟାଳୟକୁ ଯିବାବେଳେ ବାଟରେ ଗୋଟିଏ ଛୋଟ ବୁଦାବୁଦିକା ବଣଟିଏ ପଡ଼େ । ଛୋଟ ବଣଟିଏ ହେଲେ କ'ଣ ହେବ ସେଠାରେ ସାପ, ବିଲୁଆ, ହେଟା ବାଘ, ହରିଣ ଇତ୍ୟାଦି ଅନେକ ଜୀବଜନ୍ତୁ ବାସ କରୁଥାନ୍ତି । ବାଟରେ ଗଲାବେଳେ, ବେଳେ ବେଳେ ସେମାନେ ଦେଖାଦିଅନ୍ତି । କିଶୋରର ବିଦ୍ୟାଳୟକୁ ଯିବା ବାଟରେ ସେଇ ଛୋଟ ବଣଟି ପଡ଼ୁଥିବାରୁ ସେ ଡରୁଥିଲା । ତାର ମା ତାକୁ କହିଲେ ପୁଅ ତୁ ଜମା ଡରିବୁନି ଗରିବର ବନ୍ଧୁ ଭଗବାନ ସର୍ବତ୍ର ବିରାଜମାନ । ତୁ ତାଙ୍କୁ ସ୍ମରଣ କରି କରି ସେହିଠାରେ ଚାଲିଯିବୁ । ମନେରଖିଥା— "ଭୟ କାହାକୁ ଡର କାହାକୁ ଠାକୁରେ ଅଛନ୍ତି ଚଉ ବାହାକୁ", ସେ ବି ତା'ର ମା କଥାକୁ ମନେରଖି ବିଦ୍ୟାଳୟ ଯିବାକୁ ରାଜି ହେଲା । ତା'ର ମା ତାକୁ କହିଲେ, ଯଦି ତତେ ବେଶୀ ଡର ଲାଗେ ତାହାଲେ ତୁ ହରି ହରି ବୋଲି ଡାକିଲେ ସେ ତୋ ଡାକ ଶୁଣି ଆସିବେ ।

ଥରେ କିଶୋର ବିଦ୍ୟାଳୟକୁ ଯିବା ବାଟରେ ଗୋଟିଏ ବାଘ ଶୋଇଥିବାର ଦେଖି ଭୟରେ ଥରିବାକୁ ଲାଗିଲା ଏବଂ ସେହି ସମୟରେ ତା'ର ମା କଥା ମନେପଡ଼ିଯିବାରୁ ସେ ତା'ର ବିପଦର ବନ୍ଧୁ ହରିକୁ ବଡ଼ ପାଟିରେ ଡାକିଲା — ହରିଆ, ହରିଆ ତୁ କୁଆଡ଼େ

ଅଛୁ ଆସେ, ମୋତେ ଭାରି ଭୟ ଲାଗୁଛି । ସେତିକିବେଳେ ଗୋଟିଏ ବୁଢା ଆଡ଼ୁଆଳରୁ ହଠାତ୍ ଗୌଡ଼ ପିଲାଟିଏ ବାହାରି ଆସି କହିଲା ଡ଼ର ନାହିଁ କିଶୋର ମୁଁ ପରି ପ୍ରତିଦିନ ଏଠିକି ଗାଈପଲ ଧରି ଚରେଇବାକୁ ଆସୁଛି । କିଶୋର କହିଲା ତୁମକୁ ଡ଼ର ଲାଗୁନାହିଁ, ସେ ପିଲାଟି କହିଲା ଡ଼ର କ'ଣ ସେମାନେ ତ ମୋର ମିତ୍ର ହୋଇଗଲେଣି ! ଦେଖିବୁ କହି ଶୋଇଥିବା ବାଘଟିକୁ କହିଲା ଦେଖ କିଶୋର ମୋର ସାଙ୍ଗ ତେଣୁ କେବେ ଯେମିତି ତାକୁ ହଇରାଣ ନକରୁ ଏହା ଶୁଣି ବାଘ ମଧ୍ୟ ମୁଣ୍ଡ ହଲାଇ ହିଁ କଲା । ତାପରେ ଗୌଡ଼ ପିଲାଟି କିଶୋରର ବିଦ୍ୟାଳୟ ପାଖରେ ତାକୁ ଛାଡ଼ି ଦେଇ କହିଲା— ଯଦି ତୋର କୌଣସି ଅସୁବିଧା ହୁଏ ମୁଁ ତ ଏଠାରେ ରହୁଛି ମୋତେ ଡ଼ାକିବୁ ।

ଥରେ ବିଦ୍ୟାଳୟରେ ଗୁରୁଜୀ ପିଲାମାନଙ୍କୁ ଗୋଟିଏ ଭୋଜି କରିବା ପାଇଁ କହିଲେ । ଭୋଜି ଦିନ ପିଲାମାନେ ନାନାପ୍ରକାର ଜିନିଷ ଘରୁ ଆଣିଲେ । ମାତ୍ର କିଶୋର ବହୁତ ଗରିବ ହୋଇଥିବାରୁ ବିଦ୍ୟାଳୟକୁ ନ ଆସି ଘରେ ମନଦୁଃଖରେ ବସିଥିଲା । ତା'ର ମା ତାକୁ କହିଲେ ପୁଅ ତୁ ଯା ତୋର ଯେଉଁ ବଣରେ ଗୌଡ଼ ସାଙ୍ଗ ତାଙ୍କୁ କହିବୁ ।

କିଶୋର ମନ ଖୁସିରେ ବଣକୁ ଯିବା ରାସ୍ତାରେ ଡ଼ାକିଲା ହରିଆ ଭାଇ ହରିଆ ଭାଇ ଶୁଣ । ସଙ୍ଗେ ସଙ୍ଗେ ପୂର୍ବଥର ପରି ସେଥରବି ହରିଆ ଭାଇ ଆସି ପହଞ୍ଚିଲେ । କିଶୋର କାନ୍ଦି କରି ସବୁକଥା ଜଣାଇଲା । ହରିଆ କହିଲା ଏଇ ସାଧାରଣ କଥାପାଇଁ କାନ୍ଦୁଛୁ ରହ ମୋର ବହୁତ ଗାଈ ଅଛନ୍ତି । ମୁଁ କ୍ଷୀର ନେଇ ଆସୁଛି ।

ତାପରେ କିଛି ସମୟ ପରେ ହରିଆ ଭାଇ ଠାରୁ କ୍ଷୀର ନେଇ ବିଦ୍ୟାଳୟରେ ପହଞ୍ଚିଲା । ସେହି କ୍ଷୀରରେ କ୍ଷୀରି ହେଲା, ଭୋଜି ସରିଲା ସମସ୍ତେ ଖାଇ ସାରିବା ପରେ ମଧ୍ୟ ଆହୁରି କ୍ଷୀର ବଳିଥିଲା, ତେଣୁ ଗୁରୁଜୀଙ୍କ କଥା ମାନି କ୍ଷୀରକୁ ନ ଅଜାଡ଼ି କ୍ଷୀର ଏକ ସୃଷ୍ଟି କରି ପାମାପ୍ତ ହୋଇ ଥିବାରୁ ସମସ୍ତେ ପିଇଲେ ।

ତାପରେ ମଧ୍ୟ ସେ କ୍ଷୀର ସରିଲା ନାହିଁ । ତେଣୁ ବାଧ୍ୟ ହୋଇ ଏତେ କ୍ଷୀର କେଉଁଠୁ ଆଣିଥିଲୁ ବୋଲି କିଶୋରକୁ ପଚାରିଲେ । ସେ ସମସ୍ତ କଥା କହିଲା ।

ସମସ୍ତେ ବଣକୁ ଆସିଲେ । କିଶୋର ବଡ଼ ପାଟିରେ ଡ଼ାକିଲା ହରିଆ ଭାଇ-ହରିଆ ଭାଇ ହେଲେ କେହି ଆସିଲେ ନାହିଁ । କେବଳ ଶୁଣାଗଲା— କିଶୋର ! ମୁଁ ସମସ୍ତଙ୍କୁ ଦେଖାଦିଏ ନାହିଁ । ମୋତେ ଯେ ମନପ୍ରାଣ ଦେଇ ଭଲ ପାଉଥାଏ, ସତକଥା କହୁଥାଏ, ସେହିଁ ଅନ୍ତରରେ ଡ଼ାକିଲେ ମଧ୍ୟ ମୁଁ ବିପଦ ସମୟରେ ତାକୁ ସାହାଯ୍ୟ କରେ । ମୁଁ ଗରିବର ବନ୍ଧୁ । ତୋପରି ସରଳମତି ପିଲାଙ୍କୁ ମୁଁ ସାହାଯ୍ୟ କରେ ଓ ସଦାସର୍ବଦା ତାଙ୍କର ପାଖେ ପାଖେ ଥାଏ ।



# "କଷ୍ଟ କଲେ କୃଷ୍ଣ ମିଳେ"

ରାମପୁରରେ ଶ୍ୟାମଘନ ବାବୁଙ୍କର ଗୋଟିଏ ପୁଅ ଥାଏ । ନାଁ ତା'ର କାଳିଆ, ତାର ମା ଓ ବାପା ତାକୁ ବହୁତ ଭଲ ପାଉଥାନ୍ତି । ସେ ମା ବାପାଙ୍କର ଗେଲବସର ଗୁଣ ଯୋଗୁଁ ପାଠରେ ମନ ନଦେଇ ପ୍ରାୟ ସମୟ ଗୁଡ଼ି ଉଡ଼େଇବା, କାହା ବାଡ଼ିରୁ ପିଜୁଳି ତ କାହା ବାଡ଼ିରୁ ଆମ୍ବ, କୋଳି ଚୋରେଇବାରେ ସମୟ ନଷ୍ଟ କଲା । ତାଫଳରେ ସେହିବର୍ଷ ଶ୍ରେଣୀରେ ଫେଲ ହେଲା । ସବୁ ସାଙ୍ଗମାନେ ଉପର ଶ୍ରେଣୀକୁ ଗଲେ, ସେ ଗଧ ହୋଇ ସେହି ଶ୍ରେଣୀରେ ପୁଣି ପଢ଼ିଲା । ତା'ର ସାଙ୍ଗମାନେ ତାକୁ ଗଧ, ଗଧ କହି ଚିଡ଼େଇଲେ । ମନରେ ତାର ଦୁଃଖ ହେଲା । ସେ ମନରେ ମନରେ କାନ୍ଦିବାକୁ ଲାଗିଲା । ସେହିଦିନ ତାଙ୍କ ଘରକୁ ତାଙ୍କର ଅଜା ଆସିଥିଲେ, ସେ କହିଲେ — ମୋ କାଳିଆ ମନ କାହିଁ ଦୁଃଖ । ଏତିକ କହି ଗେଲ କରି ଦେଲେ, ତା'ପରେ କାଳିଆ ବହୁତ ଜୋରରେ କାନ୍ଦି ତା'ର ଦୁଃଖ ଅଜାଙ୍କୁ କହିଲା । ଅଜା କହିଲେ—"କଷ୍ଟ କଲେ କୃଷ୍ଣ ମିଳେ" ତୁ କଷ୍ଟ କରି ପାଠ ପଢ଼ିଲେ ନିଶ୍ଚୟ ଶ୍ରେଣୀରେ ପ୍ରଥମ ମଧ୍ୟ ହୋଇପାରିବୁ । ତେଣୁ କନ୍ଦାକନ୍ଦି କରି ସମୟ ନଷ୍ଟ ନକରି ଏହିବର୍ଷ ମନଦେଇ ସ୍କୁଲରେ ଶିକ୍ଷକଙ୍କ କଥା ମାନି ପାଠ ପଢ଼ିଲେ ତୁ ଭଲ କରିବୁ । ଅଜାଙ୍କ କଥାଶୁଣି କାଳିଆ ମନରେ ଦମ୍ଭ ଆସିଲା । ସେ ଦୃଢ଼ ନିଶ୍ଚୟ ହୋଇ ଖେଳାଖେଳି ଓ ବୁଲାବୁଲିରେ ସମୟ ନଷ୍ଟ ନକରି ମନଦେଇ ପାଠ ପଢ଼ିଲା । ଶିକ୍ଷକଙ୍କ ପ୍ରିୟ ଛାତ୍ର ହେଲା ଓ ସତରେ ସେହିବର୍ଷ ଶ୍ରେଣୀରେ ପ୍ରଥମ ହେଲା । ଯେଉଁ ସାଙ୍ଗମାନେ ତାକୁ ଗଧ କହି ଚିଡ଼ାଉଥିଲେ, ସେମାନେ ବି ଆଶ୍ଚର୍ଯ୍ୟ ହୋଇଗଲେ । ତାପରେ କାଳିଆର ମା ଓ ବାପା ମଧ୍ୟ ଖୁସି ହେଲେ । ଧୀରେ ଧୀରେ କାଳିଆର ଦୃଢ଼ ମନବଳ ଓ ବାପାଙ୍କର ଆଶୀର୍ବାଦ ଯୋଗୁଁ ସେ ପ୍ରତିଥର ପରୀକ୍ଷାରେ ଭଲ କରି କରି ବହୁତ ପାଠ ପଢ଼ି ଏକ ବଡ଼ ଅଫିସର ହେଲା । ସମସ୍ତେ ତାକୁ ଗାଁରେ କାଳିଆରୁ କାଳନ୍ଦୀ ବାବୁ

ବୋଲି ଡାକଲେ । ସେତେବେଳକୁ କାଳିଆର ଅଜା ମରି ଯାଇଥାନ୍ତି । କାଳିଆ କିନ୍ତୁ ତାଙ୍କର ସେଇ କଥା ଟିକେ ନଭୁଲି ମନେ ରଖିଥାନ୍ତି— "କଷ୍ଟ କଲେ କୃଷ୍ଣ ମିଳେ" । ସେ ଅଜାଙ୍କ କଥା ମନେରଖି ପାଠ ପଢିଥିବାରୁ ତା'ର ଫଳ ସେ ପାଇଥିଲି ।

*

# ସର୍ବପଲ୍ଲୀ ରାଧାକୃଷ୍ଣନ୍

ଭାରତବର୍ଷରେ ଅନେକ ମହାପୁରୁଷ ଅଛନ୍ତି । ସେଥିମଧ୍ୟରୁ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଅନ୍ୟତମ ଅଟନ୍ତି । ସର୍ବପଲ୍ଲୀ ରାଧାକୃଷ୍ଣନ୍ ଭାରତର ଉପରାଷ୍ଟ୍ରପତି, ରାଷ୍ଟ୍ରପତି ମଧ୍ୟ ଥିଲେ । ମାତ୍ର ତାଙ୍କ ଜୀବନର ଅଧିକ ସମୟ ଶିକ୍ଷକ ଓ ଅଧ୍ୟାପକ ଭାବରେ କଟିଥିଲା । ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ପ୍ରତିବର୍ଷ ସେପ୍ଟେମ୍ବର ୫ ତାରିଖ ଦିବସଟିକୁ ଗୁରୁଦିବସ ଭାବରେ ପାଳନ କରୁଅଛୁ । ସେ ଭାରତୀୟ ହୋଇଥିବାରୁ ତାଙ୍କ ମନରେ ଅଭିମାନ ଥାଏ । ସେ କଦାପି ଭାରତୀୟମାନଙ୍କର ମାନମର୍ଯ୍ୟାଦା ତଳେ ପକାଇଲା ପରି କଥା ଶୁଣି ମଧ୍ୟ କରିପାରୁ ନଥିଲେ ।

ସେତେବେଳେ ଭାରତ ଦେଶ ପରାଧୀନ ଥିଲା । ଇଂରେଜମାନେ ଆମଦେଶକୁ ଶାସନ କରୁଥିଲେ । ଏକଦା ଜଣେ ବରିଷ୍ଠ ଇଂରେଜ ଶାସକ ଅନ୍ୟ ଇଂରେଜ ଅଫିସରମାନଙ୍କୁ ଭୋଜନ ପାଇଁ ନିମନ୍ତ୍ରଣ କରିଥିଲେ । ରାଧାକୃଷ୍ଣଙ୍କୁ ମଧ୍ୟ ଭୋଜନ ପାଇଁ ନିମନ୍ତ୍ରଣ କରାଯାଇଥିଲା । ଭୋଜନ ସମୟରେ କଥା ପ୍ରସଙ୍ଗରେ ଜଣେ ଇଂରେଜ ଅଫିସର କହିଲେ—

ଇଂରେଜମାନେ ଈଶ୍ୱରଙ୍କର ପ୍ରଥମ ସୃଷ୍ଟି ତେଣୁ ସେମାନେ ଅଧିକ ସୁନ୍ଦର ଓ ବୁଦ୍ଧିଆ ହୋଇଛନ୍ତି । ଏହାଶୁଣି ଅନ୍ୟ ଇଂରେଜମାନେ ଗର୍ବର ସହ ହସିଲେ । ରାଧାକୃଷ୍ଣନ୍ ଏଥିରେ

ଅପମାନିତ ହେଲେ । ରାଧାକୃଷ୍ଣନ୍ ଯେପରି ସାହାସୀ ସେପରି ବୁଦ୍ଧିବାନ୍ ଥିଲେ । ସେ ତତ୍କ୍ଷଣାତ୍ କହିଲେ ଈଶ୍ୱର ଥରେ ରୁଟି ତିଆରି କଲେ । ପ୍ରଥମ ରୁଟିଟି ଅଧାକଞ୍ଚା ରହିଗଲା ଓ ଧବଳ ଦିଶିଲା । ପ୍ରଥମେ ଇଂରେଜମାନେ ସୃଷ୍ଟି ହେଲେ ତେଣୁ ସେମାନଙ୍କ ରଙ୍ଗ ଗୋରା ହେଲା । ତାପରେ ଈଶ୍ୱର ଯେଉଁ ରୁଟିଟି କଲେ ସେଇଟି ପୋଡ଼ିଗଲା ଏବଂ କୃଷ୍ଣବର୍ଣ୍ଣ ହୋଇଗଲା । ସେଥିରୁ ନିଗ୍ରୋମାନଙ୍କର ଜନ୍ମ ହେଲା । ତାପରେ ରୁଟିଟିକୁ ଈଶ୍ୱର ସାବଧାନ ହୋଇ କଲେ ଏବଂ ପ୍ରଥମପରି ଅଧାକଞ୍ଚା ଓ ଦ୍ୱିତୀୟ ପରି ନପୋଡ଼ି ଠିକ୍ ସୁନ୍ଦର ରୁଟି ହେଲା ପରି ହେଲା, ସେଥିରୁ ଭାରତୀୟଙ୍କର ଜନ୍ମ ହେଲା । ତେଣୁ ସେମାନଙ୍କର ବର୍ଣ୍ଣ ଶ୍ୟାମଳ ବର୍ଣ୍ଣ ହେଲା ।

ଏଥିରେ ଇଂରେଜ ଶାସକମାନଙ୍କର ଗର୍ବ ଭଙ୍ଗ ହେଲା । ସେମାନଙ୍କର ମୁଣ୍ଡ ତଳକୁ ହେଲା । ସେଠାରେ ଉପସ୍ଥିତ ଥିବା ଅନ୍ୟ ଭାରତୀୟମାନେ ରାଧାକୃଷ୍ଣନ୍ଙ୍କର ବୁଦ୍ଧିକୁ ଧନ୍ୟ ଧନ୍ୟ କଲେ । ସେ ଜଣେ ବଡ଼ ଦାର୍ଶନିକ ଥିଲେ । ଦର୍ଶନ ଶାସ୍ତ୍ରରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ।



# ଗୋପବନ୍ଧୁ

ଗୋପବନ୍ଧୁଙ୍କୁ ଉତ୍କଳମଣି କୁହାଯାଏ । ସେ ୧୮୭୭ ମସିହା ଅକ୍ଟୋବର ୯ ତାରିଖରେ ପୁରୀଜିଲ୍ଲା ସତ୍ୟବାଦୀ ଥାନା ଅନ୍ତର୍ଗତ ସୁଆଣ୍ଡୋ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦୈତାରି ଦାସ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ । ଗୋପବନ୍ଧୁଙ୍କ ପିତାମାତା ସମାଜରେ ସେବାଧର୍ମ ମନୋବୃତ୍ତି ନେଇ ନିଜର ଘର ସଂସାର କରୁଥିଲେ । ଏଣୁ ସେମାନଙ୍କର ପ୍ରଭାବ ଗୋପବନ୍ଧୁଙ୍କ ଉପରେ ପ୍ରଥମରୁ ପଡ଼ିଥିଲା । ସେ ବି. ଏ. ପାସ୍ କଲାପରେ କଲିକତାରୁ ଓକିଲାତି ପାସ୍ କରିଥିଲେ ।

ତୁଳସୀ ଦୁଇ ପତ୍ରରୁ ବାସେ । ଗୋପବନ୍ଧୁଙ୍କର ଛାତ୍ରାବସ୍ଥାରୁ ସେବା ମନୋଭାବ ପ୍ରକାଶ ପାଇଥିଲା । ସେ ଗାଁ ଦାଣ୍ଡ, ରାସ୍ତାଘାଟ ମରାମତି, ଗ୍ରାମ ସଫେଇ, ଗ୍ରାମ ପୋଖରୀରୁ ଦଳ ଓ ପଙ୍କ ଉଦ୍ଧାର, ରୋଗୀର ସେବା ପ୍ରଭୃତି କରୁଥିଲେ । ଦୁର୍ଭିକ୍ଷ, ମହାମାରୀ ଓ ବନ୍ୟା ବେଳେ ଗୋପବନ୍ଧୁ ନିଜେ ଲୋକମାନଙ୍କର ସେବା କରୁଥିଲେ । ଏପରିକି ବନ୍ୟାବେଳେ ଲୋକମାନଙ୍କୁ ସାହାଯ୍ୟ କରୁଥିବା ବେଳେ ତାଙ୍କର ଏକମାତ୍ର ପୁତ୍ରକୁ ହରାଇଥିଲେ । ଏତେ ବଡ଼ ଆଘାତ ପାଇ ମଧ୍ୟ ସେ ଦବିଯାଇ ନଥିଲେ । ତାଙ୍କର ଆତ୍ମୀୟ ସ୍ୱଜନମାନଙ୍କୁ ସାନ୍ତ୍ୱନା ଦେଇ କହିଥିଲେ । ମୋର ଗୋଟିଏ ପୁଅ ସିନା ରୋଗରେ ମରିଗଲା, କିନ୍ତୁ ବନ୍ୟାଞ୍ଚଳରେ ସହସ୍ର ପୁଅଙ୍କୁ ମରଣ ମୁହଁରୁ ବଞ୍ଚାଇ ପାରିଛି ।

ଉଚ୍ଚଶିକ୍ଷା ଲାଭ କରି ଗୋପବନ୍ଧୁ ଉଚ୍ଚ ସରକାରୀ ଚାକିରୀକୁ ପସନ୍ଦ ନକରି ଲୋକ ସେବାରେ ସମସ୍ତ ବିତାଉଥିଲେ । ଅବଶ୍ୟ କିଛି ସମୟ ସେ ଓକିଲାତି କରିଥିଲେ । ଗୋପବନ୍ଧୁଙ୍କ କାର୍ଯ୍ୟକୁ ମୋଟ ଉପରେ ତିନି ଭାଗରେ ବିଭକ୍ତ କରାଯାଏ । (୧) ଓଡ଼ିଶାରେ ଶିକ୍ଷାର ପ୍ରସାର (୨) ଓଡ଼ିଆ ଭାଷା ଅଞ୍ଚଳମାନଙ୍କରେ ମିଶ୍ରଣ (୩) ବନ୍ୟା, ମରୁଡ଼ି, ଦୁର୍ଭିକ୍ଷ ବେଳେ ଲୋକଙ୍କର ସେବା ।

ଗୋପବନ୍ଧୁ ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ, ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଦେଶ ଓ ମାନବ ସେବାରେ ମନପ୍ରାଣ ଢାଳି ଦେଇଥିଲେ । ସମାଜର ସେ ପ୍ରତିଷ୍ଠାତା ଥିଲେ । ସେ କବି ଓ ସାହିତ୍ୟିକ ଥିଲେ । ତାଙ୍କ ଦ୍ୱାରା ଲିଖିତ କେତେକ ଲେଖାରୁ ଦେଶ ଭକ୍ତିର ପରିପ୍ରକାଶ ।

"ନିଜ ସୁଖଲାଗି ଜାତ ନୁହେଁ ହିନ୍ଦୁ,
ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।"

ଅନ୍ୟ ଗୋଟିଏ ହେଲା ।

"ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ ପଥେ ଯେତେ ଗାଡ
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ଗୋପବନ୍ଧୁ ୧୯୨୮ ମସିହା ଜୁଲାଇ ୧୭ ତାରିଖରେ ମୃତ୍ୟୁ ବରଣ କରିଥିଲେ । ସେ ଏକଧାରରେ ସତ୍ୟବାଦୀ, ନିର୍ଭିକ, ଦେଶପ୍ରେମୀ, କବି, ବକ୍ତା, ରାଜନୀତିଜ୍ଞ ଓ ଦରିଦ୍ର ଜନତାର ପରମ ବନ୍ଧୁ ଥିଲେ । ସେହି ମହାନ ପୁରୁଷଙ୍କୁ ଓଡ଼ିଶାବାସୀ କେବେ ଭୁଲି ପାରିବେ ନାହିଁ ।



# ମହାତ୍ମାଗାନ୍ଧୀ

ଏହି ମର ଜଗତରେ ଜନ୍ମ ହେବା ମାତ୍ରେ ଦିନେ ନା ଦିନେ ମୃତ୍ୟୁ ନିଶ୍ଚିତ । କେହି ଅମର ହୋଇ ରହିପାରିବେ ନାହିଁ । ଏହା ଅକାଟ୍ୟ ସତ୍ୟ । ମହାପୁରୁଷ ଓ ନାରୀ ଏହି ଦୁନିଆଁରେ ଜନ୍ମ ଗ୍ରହଣ କରି ନିଜର ତ୍ୟାଗ ଓ କାର୍ଯ୍ୟ ଦ୍ୱାରା ଲୋକମାନଙ୍କ ହୃଦୟରେ ସବୁଦିନେ ରହି ଯାଆନ୍ତି । ଯୋଗଜନ୍ମା ମହାପୁରୁଷମାନଙ୍କ ମଧ୍ୟରେ ଜାତିର ଜନକ ମହାତ୍ମାଗାନ୍ଧୀ ଅନ୍ୟତମ ।

ମହାତ୍ମାଗାନ୍ଧୀଙ୍କର ପୁରା ନାମ— ମୋହନ ଦାସ କରମଚାନ୍ଦ ଗାନ୍ଧୀ । ସେ ୧୮୬୯ ମସିହାରେ ଗୁଜୁରାଟରେ ଜନ୍ମ ଗ୍ରହଣ କରିଥିଲେ । ସେ ଏଠାରେ ପାଠପଢ଼ା ଶେଷ କରି ବିଲାତ ଯାଇଥିଲେ । ସେଠାରେ ସେ ବାରିଷ୍ଟର ହୋଇ ଫେରିଥିଲେ । ଆଫ୍ରିକାରେ ବାରିଷ୍ଟାରୀ କଲାବେଳେ କଳାଲୋକଙ୍କ ପ୍ରତି ଧଳାଲୋକଙ୍କର ଅତ୍ୟାଚାର ବିରୁଦ୍ଧରେ ସେ ସତ୍ୟାଗ୍ରହ ଆନ୍ଦୋଳନ କରିଥିଲେ । ସେଥିରେ ସେ ବିଜୟୀ ହୋଇଥିଲେ । ୧୯୧୯ ମସିହାରେ ମହାତ୍ମା ଗାନ୍ଧୀ ଭାରତକୁ ଫେରି ଆସିଲେ । ସେତେବେଳେ ଭାରତ ଇଂରେଜ ସରକାରଙ୍କ ଅଧୀନରେ ଥିଲା । ଭାରତର ସ୍ୱାଧୀନତା ପାଇଁ ଇଂରେଜ ସରକାରଙ୍କ ବିରୁଦ୍ଧରେ ଅହିଂସା ନୀତିରେ ଅସହଯୋଗ ଆନ୍ଦୋଳନ ଚଳାଇଥିଲେ । "କର ଅବା ମର" ଓ "ଭାରତଛାଡ଼" ତାଙ୍କର ଦୁଇଟି ପ୍ରଧାନ ଧ୍ୱନି ଥିଲା । ମହାତ୍ମାଗାନ୍ଧୀଙ୍କୁ ଅନେକ ନିର୍ଯ୍ୟାତନା ସହିବାକୁ ପଡ଼ିଥିଲା । ସର୍ବଶେଷରେ ମହାତ୍ମାଗାନ୍ଧୀ ବିଜୟୀ ହେଲେ । ୧୯୪୭ ମସିହା ଅଗଷ୍ଟରେ ଭାରତ ସ୍ୱାଧୀନ ହେଲା । କିନ୍ତୁ ଇଂରେଜମାନଙ୍କ କୂଟଚକ୍ରାନ୍ତ ଯୋଗୁଁ ଭାରତ ବିଭକ୍ତ ହେଲା । ଯାହାଦ୍ୱାରା ପାକିସ୍ଥାନ ସୃଷ୍ଟି ହେଲା ।

ମହାତ୍ମାଗାନ୍ଧୀ ସତ୍ୟ ଓ ଈଶ୍ୱରର ସାଧକ ଥିଲେ । ଉପବାସ ବା ଅନଶନ ତାଙ୍କ ଜୀବନର ପ୍ରଧାନ ସଙ୍ଗୀ ଥିଲା । ରାମଧୁନ ତାଙ୍କର ଅତିପ୍ରିୟ ସଙ୍ଗୀତ ଥିଲା । ସେ ଅସ୍ପୃଶ୍ୟତା ଦୂର କରିବା ପାଇଁ

ଲୋକମାନଙ୍କ ମଧ୍ୟରେ ଜାଗରଣ ସୃଷ୍ଟି କରିଥିଲେ । ସେ ୧୯୪୮ ମସିହା ଜାନୁୟାରୀ ୩୦ ତାରିଖରେ ଆତତାୟୀ ହାତରେ ପ୍ରାଣ ହରାଇଥିଲେ ।

ତାଂକର ତ୍ୟାଗ ଓ ଦେଶପାଇଁ ଆତ୍ମୋତ୍ସର୍ଗ ଦ୍ୱାରା ଯୁଗେ ଯୁଗେ ଆମର ମାନସ ପଟରେ ଅମର ହୋଇ ରହିଥିବେ ।

*